# ପୂର୍ବରୁ ପଦେ

ଏଇ ସୁନ୍ଦର କଥାଟି ପଢ଼ିବା ଅବସରରେ ପିଲାମାନେ ନିଜ ପରିବେଶ ଓ ସାମାଜିକ ଇତିହାସର ପରିଚୟ ପାଇବେ । ପଲ୍ଲୀ ପରିବେଶରେ ଆମର ଉତ୍ସବ ଓ ପର୍ବ କଥା ମଧ୍ୟ ଏଥିରେ ବର୍ଣ୍ଣନା କରାଯାଇଛି ।

ପିଲାଟିବେଳୁ ସେମାନଙ୍କ ମନରେ ପ୍ରାକୃତିକ ସୌନ୍ଦର୍ଯ୍ୟ ପ୍ରତି କପରି ଆଗ୍ରହ ଜନ୍ମିବ—ସେ ଦିଗରେ ଲେଖକ ଯତ୍ନଶୀଳ ହୋଇଛନ୍ତି ।

ପ୍ରଥମ ପ୍ରକାଶ ୧୯୯୧

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ଗୋସ୍ୱାମୀ ପ୍ରେସ
ଆଲମଚାନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ—ଟ ୬.୦୦

## ନାଟକର ଚରିତ୍ର

୧ । ମନୁ

୨ । ଢଗୁଆ

୩ । ବାବାଜୀ

୪ । ଚେନାଚୁରବାଲା

୫ । କୁଣ୍ଢେଇବାଲା

୬ । ମନ୍ଦର ବାବୁ

୭ । ମନ୍ଦର ବାବୁଙ୍କ ସ୍ତ୍ରୀ

୮ । କୋଲାବାଲା

୯ । ଖବରକାଗଜ ବିକାଳୀ ଓ ଅନ୍ୟମାନେ

[ ମନ୍ଦରବାବୁ ଓକିଲଙ୍କ ଦପ୍ତର । ଆଲମାରୀଟି ବହି ଓ ନଥିପତ୍ରରେ ଭରା । ଦୁଇଟା ଚଉକି ଓ ଖଣ୍ଡିଏ ଟେବୁଲ ପଡ଼ିଛି । ଟେବୁଲ ଉପରେ ଲେଖାଲେଖି ସରଞ୍ଜାମ ଓ ଗୋଟିଏ ଟାଇପ୍‌ରାଇଟର୍ ମେଶିନ୍ ରଖାଯାଇଛି ।

ପରଦା ଉଠିଲା ବେଳକୁ ଦେଖାଗଲା ଟେବୁଲ ଉପରେ ଚଉକିଟିଏ ପକାଇ ତା' ଉପରେ ବସିଛି ଓକିଲଙ୍କର ପୁଅ ମନୁ । ଛୋଟ ଗୁଲୁଗୁଲିଆ ପିଲାଟିଏ । ସେ ତା' ବାପାଙ୍କୁ ଅନୁକରଣ କରିବାକୁ ଯାଇ ତାଙ୍କ କୋଟ, ପ୍ୟାଣ୍ଟ, ଟୋପି, ଟାଇ ଓ ଚଷମା ପିନ୍ଧି ଗୋଟିଏ ଖାଣ୍ଟିମତ ବଡ଼ବାବୁ ସାଜିଛି । ମାତ୍ର ଏହି ପୋଷାକଗୁଡ଼ିକ ତାହା ପାଇଁ ଯଥେଷ୍ଟ ବଡ଼ ହୋଇଥିବାରୁ ତାକୁ ମୋଡ଼ାମାଡ଼ି ଟେକଟାକି କୌଣସିମତେ ଦେହରେ ଗୁଡ଼େଇଛି ଓ ଖବରକାଗଜ ମୁହଁ ଆଗରେ ରଖି ପଢ଼ିବାର ଛଳନା କରୁଛି— ]

ମନୁ—(ବାପାଙ୍କ କଣ୍ଠକୁ ଅନୁକରଣ କରି) ହରିଆ, ହରିଆ !

ହରିଆ—(ଅନ୍ତରାଳରୁ) ବାବୁ !

ମନୁ—(ଜୋର୍‌ରେ) ହରିଆ, ହରିଆ !

[ପ୍ରବେଶ କଲା ଓକିଲଙ୍କର ବୁଢ଼ା ଚାକର ହରିଆ । ପିନ୍ଧିଛି ଖଣ୍ଡିଏ ମୋଟା ଧୋତି ଓ ଖଣ୍ଡିଏ ଗେଞ୍ଜି । ଅଣ୍ଟାରେ ବାନ୍ଧିଛି ଖଣ୍ଡେ ଗାମୁଛା ।]

ହରିଆ—(ଚାରିଆଡ଼କୁ ଚାହିଁ) ତମେ କୁଠି ବାବୁ ? ବାବୁ, ବାବୁ !

ମନୁ—(ଗମ୍ଭୀର ସ୍ୱରରେ) ଶୁଣ୍ ।

[ଦୁଖିଆ ଚାରିଆଡ଼କୁ ଚାହିଁ ଶେଷରେ ମନୁକୁ ଦେଖିଲା ।]



ଦୁଖିଆ—ଏଁ, ଗ୍ରେଟବାବୁ ! ତମେ ଏତେ ଉପରେ ବଇଚ । ଓହ୍ଲେଇ ଆସ ।

ମନୁ—କ'ଣ ତୋ' ହୁକୁମ୍‌ରେ ! କେରେ, ବାବୁ ତ କହିବୁ, ଗ୍ରେଟବାବୁ କ'ଣ ? ସବୁବେଳେ ଗ୍ରେଟବାବୁ, ଗ୍ରେଟବାବୁ ! ସବୁକଥାରେ ଗ୍ରେଟ ଗ୍ରେଟ କହି ମତେ ଏକଦମ୍ ଗ୍ରେଟ କରଦେଇ ସାରିଲୁଣି । ମୁଁ ଏତେ ଉପରେ !

ଦୁଖିଆ—ଏତେ ଉପରେ ବଇଚ, ପଡ଼ିଯିବ, ପଡ଼ିଯିବ ବାବୁ !

ମନୁ—ପଡ଼ିଯିବ, ମୁଁ କ'ଣ ପିଲାଟିଏ ହେଇଛୁ ?

ଦୁଖିଆ—ପିଲା ନୁହଁ, ଆଉ କ'ଣ ବଡ଼ ? ଓହ୍ଲେଇ ଆସ ଗ୍ରେଟବାବୁ ।

ମନୁ—ପୁଣି ଗ୍ରେଟବାବୁ କହିଲୁ !

ଦୁଖିଆ—ତେବେ କ'ଣ ବୋଲି ତମକୁ ଡାକବ ?

ମନୁ—କାଇଁ, ବଡ଼ବାବୁ ବୋଲି । ଯାହା କହି ବାପାଙ୍କୁ ସବୁବେଳେ ଡାକୁ ।

ହରିଆ—ତେବେ ବଡ଼ବାବୁଙ୍କୁ କ'ଣ ବୋଲି ଡାକିବ ?

ମନୁ—ମୋ' ମୁଣ୍ଡ ବୋଲି ଡାକିବୁ ! ତୁ ତୋ' ବଡ଼ବାବୁଙ୍କୁ ଡାକିଲେ କେତେ, ନ ଡାକିଲେ କେତେ ! ମୋର ସେଥିରେ କ'ଣ ଅଛି !

ହରିଆ—ତମର ସିନା କିଛି ନାହିଁ ଗ୍ରେଟବାବୁ ! [ମନୁ ଆଖି ମୁଗ୍ଡାଟିଲା] ତମର ସିନା କିଛି ନାହିଁ ଗ୍ରେଟ··· ନା, ବଡ଼ବାବୁ; ହେଲେ ମୋର ତ ସେ ଖାମିନ୍ଦ ।

ମନୁ—ମୁଁ କ'ଣ ତୋର ଖାମିନ୍ଦ ନୁହେଁ ?

ହରିଆ—ହଁ, ଖାମିନ୍ଦ ଯେ, ହେଲେ ଗ୍ରେଟ ଖାମିନ୍ଦ ।

ମନୁ—ପୁଣି ଗ୍ରେଟ ?

ହରିଆ—ନାଇଁ ବଡ଼ । ହେଲେ ବଡ଼ବାବୁଙ୍କୁ କ'ଣ ବୋଲି ଡାକିବ ?

ମନୁ—କାଇଁ, ସେଇ ବଡ଼ବାବୁ ବୋଲି ଡାକୁନୁ !

ହରିଆ—ଦହିଁଙ୍କି ବଡ଼ବାବୁ ବୋଲି ଡାକିଲେ ଗୋଳମାଳ ହେଇଯିବ । ତାଙ୍କୁ ଡାକିଲେ, ତେମେ ଶୁଣିବ; ତମକୁ ଡାକିଲେ, ସେ ଶୁଣିବେ । ଏ ତ ବଡ଼ ଗୋଳମାଳିଆ କଥା !

ମନୁ—ତେବେ ତାଙ୍କୁ କିଛି ନ ଡାକ ! ଖାଲି ଠାରିବୁ । ହୁଁ ହୁଁ କରି ଇସ୍‌ଭ ଦବୁ ।

ହରିଆ—କାଇଁ ? ମୁଁ କ'ଣ ବୋବା ? ସେମିତି କଲେ ବଡ଼ବାବୁ···

ମନୁ—ମୁଁ ଯାହା କହୁଚି ସେଇଆ କର । ଖାଲି ବଡ଼ବାବୁ ବଡ଼ବାବୁ ହଉଚି !

ହରିଆ—ହେବନି ? ସେ ମୋର ଏତେଦିନର ଖାମିନ୍ଦ ! ମେତେ ଦରମା ଦଉଚନ୍ତି । ମୋ ଭଲମନ୍ଦ ବୁଝିଚନ୍ତି ।

ମନୁ—ମୁଁ ବୁଝିବ ।

ହରିଆ—ତେମେ କ'ଣ ବୁଝିବ ! ତେମେ ତ ମେତେ ଖାଲି ହଇରାଣ ହରକତ କରୁଚ ।

ମନୁ—(ଆଖି ତରାଟି) ହରିଆ ।

ହରିଆ— ହଁ ଷ୍ଟେଟବାବୁ !

ମନୁ—ପୁଣି ଷ୍ଟେଟବାବୁ କହିଲୁ !

ହରିଆ—କ'ଣ କରିବ ! ନଆଁ ନଗା ଖୋଇଟା ହେଇଯାଇଚି ପରା !

ମନୁ—ସେ ଖୋଇ ଗୁଡ଼୍ କହୁଚି । ନଇଲେ ତତେ ଏକଦମ୍ ଠିକ୍ କରିଦେବି । କର୍ ଅଭ୍ୟାସ ! ହରିଆ !

ହରିଆ—କ'ଣ ଷ୍ଟେଟ ନା ବଡ଼ବାବୁ !

ମନୁ—(ଆଖି ତରାଟି) ହରିଆ ।

[ହରିଆ ବିରକ୍ତି ପ୍ରକାଶକରି ନୀରବ ରହିଲା]

(ଜୋରରେ) ହରିଆ !

ହରିଆ—(ଜୋରରେ) ଆଜ୍ଞା ବଡ଼ବାବୁ !

ମନୁ—ବେଶ୍ । ଆଉ କେବେ ଯେମିତି ନ ଭୁଲୁ । ଆଚ୍ଛା ଶୁଣ୍ ।

[ମନୁ ଗୀରଦର୍ପରେ ଠିଆହୋଇପଡ଼ିଲା]

ହରିଆ—ଷ୍ଟେଟ···ବଡ଼ବାବୁ ତମେ ପଡ଼ିଯିବ । ଓହ୍ଲେଇ ଆସ । ଇଲେ ପରା ବଡ଼ବାବୁ 'ଆସିବେ ନା !

ମନୁ—ଇଲେ ଏଠି ଆଉ କେହି ବଡ଼ବାବୁ ନାହାନ୍ତି । ବାପା ନ ଫେରିବା ଯାଏଁ ଏ ଘରେ ଗୋଟିଏ ବଡ଼ବାବୁ । ସେ ହଉଛି ମୁଁ । (ନେକ୍‌ଟାଇ ଦେଖାଇ) ଆଚ୍ଛା, ଏଇଟା ବାପା ଯେମିତି ବାନ୍ଧନ୍ତି, ସେମିତି ହେଇଚି ନା ?

ହରିଆ—ଛୁ, ଏ କେମିତିକା ଟେଇପିନ୍ଧା ! ମୋଡ଼ମାଡ଼ ହେଇଯାଇଚି ।

ମନୁ—ଟେଇ ନୁହେଁ, ଟାଇ । ତୁ ଟିକିଏ ଇଂରେଜୀ ପଢ଼ । କ'ଣ ପଢ଼େଇ ଦେବୁ ? [ମନୁ ଟାଇ ସଜାଡ଼ିଲା]

ହରିଆ—ତେମେ କ'ଣ ପଢ଼େଇ ଦବ ? ତୁମକୁ ତ ପାଠ ଆସୁନି ବୋଲି ନିତକାନିତି ମାଡ଼ ଖାଉଚ ।

ମନୁ—ଆଉ କେହି ମାରିପାରିବେନି ।

ହରିଆ— କାଇଁକି ?

ମନୁ—ଏବେ ବଡ଼ବାବୁ ହେଇଗଲ ପରା । (ଟାଇ ଦେଖାଇ) ହେଲ ?

ହରିଆ—ନାଁ ।

ମନୁ—(ବିରକ୍ତି ପ୍ରକାଶ କରି) ନାଁ !

ହରିଆ—ସେ କ ଟେଇପିନ୍ଧା ? ଖାଲି ମୋଡ଼ମାଡ଼ ଗଣ୍ଠି ପକେଇ-
ଦେଲ୍……

ମନୁ—ବାପା ତ ସେମିତି ପିନ୍ଧନ୍ତି ।

ହରିଆ—ବଡ଼ବାବୁ କାଇଁ ଏମିତି ଅବୁଝିଆ କରି ପିନ୍ଧିବେ ! ସେ କେଡ଼େ
ସୁନ୍ଦର ଗଣ୍ଠି ପକାନ୍ତି । ତେମେ ପିଲା ଲୋକ । ତମକୁ ଏସବୁ କମିତି
ଆସିବ ! ତମ ଖେଳ ଭଲ ତ ତେମେ ଭଲ । ପାଠ ପଢ଼, ବଡ଼
ହୁଅ……

ମନୁ—ମୁଁ କ'ଣ ଇଲେ ଗ୍ରେଟ ହେଇଚ ! ମତେ ଆସି ନଅ ବର୍ଷ ହେଲାଣି ।

ହରିଆ—ନଅ ବରଷ କ'ଣ ଗୋଟେ ବଅସ ବାବୁ ! ମେତେ ଆସି
ଗୁରି କୋଡ଼ି ପାଞ୍ଚ ହେଲାଣି ।

ମନୁ—ଆବେ ସେମିତି ମଫସଲିଆ ମୂର୍ଖଙ୍କ ପରି କୋଡ଼ି କୋଡ଼ି କ'ଣ
କହୁଚୁ ? ଗୁଣାଗୁଣିକରି ସଂଖ୍ୟାଟା କେତେ ହେଲା କହୁନୁ……
[ମନୁ ଟାଇ ସଜାଡ଼ି ସଜାଡ଼ି ତଳକୁ ଓହ୍ଲାଇଲା । ହରିଆ ତାକୁ
ଧରିବାକୁ ଚେଷ୍ଟା କରିବାରୁ ସେ ତା' ହାତକୁ ଛୁଆଁଡ଼ ଦେଲା ।]

ହରିଆ—କହିଲ, କହିଲ ବାବୁ କେତେ ହେଲା ? ତେମେ ତ କେତେ
ଗୁଣନ ହରଣ ଫେଡ଼େ ମିଶା ପଢ଼ୁଛ……

ମନୁ—ମୁଁ ଇଲେ ତୋ ପାଇଁ ଗୁଣନ ମିଶାଣ କରିବ ! ସେଥିକ ସିଲଟ
ଖଡ଼ କ କାଗଜ ପେନ୍‌ସିଲ ଦରକାର ।

ହରିଆ—(ହସି) ଏଁ, ଏଇ ହିସାବକୁ ଏତେ ଦରବ ଦରକାର ? ତୁମ
ଏ ଇସ୍କୁଲିଆ ପାଠ କଣ୍ଠ ନୁହେଁ । ହେଲେ ମୁଁ ଯେଉଁ ମାଟିବଂଶ
ଅବଧାନ ପାଖେ ପାଠ ପଢ଼ୁଥିଲି ନାଁ, ସେ ଦଶ ଦଶଟା ସଂଖ୍ୟା
ଏକାଠି ଭୁଣ୍ଡେ ଭୁଣ୍ଡେ ଗୁଣି ଦଉଥିଲେ ।

ମନୁ—ରଖ ତୋ ମାଡିବଂଶ ଅବଧାନ । ତାଙ୍କୁ କେଉଁ ଆସୁ ନ ଥିଲା ବୋଲି ସେ ଖାଲି ବଳଦଆ ହିସାବ କରୁଥିଲେ ।

ହରିଆ—ବଳଦଆ ନୁହେଁ ଗ୍ଲୋଟବାବୁ ! (ମନୁ ଆଖି ମୁରାଡିବାରୁ) ନା ବଡ଼ବାବୁ ! ଓଡ଼ାଙ୍କ, ଫେଡ଼ାଙ୍କ, ଚବଂଡ଼ଆ ଗୁଣନ, ଲୀଳାବତୀ ସୂତ୍ର......

ମନୁ—ଏତେ ତ ଓଡ଼ାଙ୍କ ଫେଡ଼ାଙ୍କ ପଡ଼ିଛୁ । କହୁନୁ ହିସାବ କରି କେତେ ତୋ ବଅସ ହେଲା ।

ହରିଆ—ମୁଁ କ'ଣ ସେ ସେ ପଢ଼ିପାରିଲି ! ମୋର ତ ପାଞ୍ଚ-କ ପଣିକଆରୁ ପାଠ ବନ୍ଦ ।

ମନୁ—ପାଞ୍ଚ-କ କ'ଣ ରେ ?

ହରିଆ—ପାଞ୍ଚ-କ ବୁଝି ପାରୁନଟି ! ତେମେ କ ପାଠ ପଢ଼ୁଛ ମ ଗ୍ଲେଟବାବୁ !

ମନୁ—ପୁଣି ଗ୍ଲୋଟବାବୁ !

ହରିଆ—ନାଇଁ, ବଡ଼ବାବୁ ।

[ଏତେବେଳକୁ ମନୁ ଟାଇ ଫିଟାଇ ବାରମ୍ବାର ବାନ୍ଧୁଥାଏ]

ମନୁ—ଏବେ ହେଲା ?

ହରିଆ—ନା ।

ମନୁ—କ'ଣ ନାଁ । ମୁଁ ଯାହା କଲେ, ତୋ ମନକୁ କ'ଣ କଛୁ ପାଉନ ? କ'ଣ ହେଲା ?

ହରିଆ—(ହବ୍ରତ ହେଇ) ଏଃ !

ମନୁ—ପୁଣି !

ହରିଆ—ଠିକ୍ ତ ହେଇନ । ଆଉ ଠିକ୍ ହେଲା ବେଳ ଜାହିବ କମିତ ଗ୍ଲେ...ଗ୍ଲେଟ...ବଡ଼ବାବୁ ।

ମନୁ—ନାଇଁ କହ, ହେବ !

ହରିଆ—କ'ଣ ଧମକରେ ?

ମନୁ—ହଁ, ଧମକରେ ।

ହରିଆ—ହଜ, ହେଲା । (ମନୁକୁ ନିରେଖି ଗୃହିଁ) ଏଁ, କ'ଣ ବଡ଼ବାବୁଙ୍କ ଜୋତା, ମୋଜା, ଟୋପି, ଟେଇ ସବୁ ପିନ୍ଧି ପକେଇଚ । ଫେଣେ ତାଙ୍କ ପରିଚଷ୍ଟ ! ସେଗୁଡ଼ା ଓହ୍ଲେଇ ପକାଅ । ନଇଲେ ବଡ଼ବାବୁ ଅଇଲେ ମେତେ ଗାଳିଦେବେ ।

ମନୁ—କାଇଁକି ତେତେ ଗାଳିଦେବେ ?

ହରିଆ—ତେମେ ତାଙ୍କ ଆପଙ୍କ ପୋଷାକ ପିନ୍ଧିଚ ପେରି ।

ମନୁ—ଭଲ କଲି । ସେ କାଇଁ ମୋ ପାଇଁ ପୋଷାକ କରୁ ନାହାନ୍ତିକ !

ହରିଆ—ତମର କ'ଣ ପୋଷାକ ପିନ୍ଧିବା ବଅସ ହେଲାଣି ! ଏତେ ବକଟେ ପିଲା ।

ମନୁ—ପୁଣି ବକଟେ କହିଲୁ ! ମୁଁ ତତେ ସାବଧାନ କରି ଦଉଚି ହରିଆ । ମୁଁ ଯେମିତି କହୁଚି ସେମିତି କର । ନଇଲେ ତତେ ଏକଦମ୍ ଏଠୁ ନିକାଲି ଦେବି ।

ହରିଆ—ଏଁ, ନିକାଲିଦବ ! ମୁଁ ଏତେ ଦିନର ପୁରୁଣା ଗୃକରଟା !

ମନୁ—ପୁରୁଣା ଗୃକର ବୋଲି ବଡ଼ବାବୁଙ୍କ କଥା ମାନିବୁନି ।

ହରିଆ—ବଡ଼ବାବୁଙ୍କ କଥା ତ ମାନୁଚି ।

ମନୁ—ମୋ କଥା ?

ହରିଆ—ମାନିବି ଆଜ୍ଞା !

ମନୁ—ମାନିବୁ ?

ହରିଆ—ନ ମାନି ଗ୍ଭରି ଅଛି ! ଆଛା କ'ଣ ହୁକୁମ କରୁଚ କର ।

ମନୁ—ପ୍ରଥମ ହୁକୁମ ହେଲା ଏ ଟାଇପ୍ ମେଶିନ୍‌କୁ ଏଠୁ ଉଠା । ଏଟା ଗୋଟେ ସବୁବେଳେ ଧଡ଼୍ ଧଡ଼୍ ଖଡ଼୍ ଖଡ଼୍ ହଉଚି ଯେ ମଣିଷକୁ ଟିକିଏ···

ହରିଆ—ଟିକିଏ ?

ମନୁ—କାମ କରେଇ ଦଉନି ।

ହରିଆ—ତମର କି କାମ ଯେ ? ଖାଲି ତ ଖେଳ···

ମନୁ—ଖେଳ କ'ଣ ରେ ଖେଳ କହୁ । ଖେଳଟା ଗୋଟେ କ'ଣ କାମ ନୁହେଁ ?

ହରିଆ—ହିଁ, ବଡ଼ ବଢ଼ିଆ କାମ । ହାତୀ, ଘୋଡ଼ା, ଉଡ଼ାଜାହାଜ, ବୁଡ଼ାଜାହାଜ···

ମନୁ—କ'ଣ ଥଟ୍ଟା କରୁଚୁ ! ଉଠା ଏ ଟାଇପ୍ ମେସିନ୍ ।

ହରିଆ—ତେମେ ତ ଗ୍ରେ · ଗ୍ରେଟ···ବଡ଼ବାବୁ ବାରଣ୍ଡାରେ କ ବଗିଚ୍ଚରେ ଖେଳବ, ଆଉ ଏ ଟାଇପ୍ ମିସିନଟା ତମର କ'ଣ ଅଡ଼ୁଆ କରୁଚି ?

ମନୁ—ସବୁବେଳେ ଯାଉ ଆସୁ ଖଟର୍ ଖଟର୍ ହଉଚି । ମତେ ଜମା ଭଲ ଲାଗୁନି ।

ହରିଆ—ତମକୁ ଖାଲି ଖେରନାଗୁବ୍ । ଭଲ ନାଗେ ।

ମନୁ—ହରିଆ !

ହରିଆ—ଆଜ୍ଞା !

ମନୁ—ପୁଣି ଗୋଳମାଳ କଲୁ ! ମୁଁ ଯାହା କହୁଚି, ସେଇଆ କର । ନଇଲେ ମା ଆସିଲେ କହିଦେବି ତୋ' ନାଁରେ ଯେ···

ହରିଆ—କହିଦେବ ମୋ' ନାଁରେ ? କ'ଣ କହିବ ?

ମନୁ—କହିବି, ବୋଉ, ତୁ ନଥିଲାବେଳେ ହରିଆ ମତେ ଡରେଇଲା ଯେ ମୁଁ କାନ୍ଦ କାନ୍ଦ ନୟାନ୍ତ । ଉଁ-ଉଁ-ଉଁ (ମିଛରେ ସକେଇଲା)



(ହରିଆ ବକୁଚ ଦେଇ ଗୃହଆଡ଼କୁ ଅନେଇଲା)

ହରିଆ—ଓହୋ, କାହିଁକି ମିମିଚ ହଉଚ ଭଲା ! ସତକୁ ସତ ମା ଯଦି ଇଏନେ ଆସି ପହଞ୍ଚିବେ, ମେରେ ଆଉ କଣ ରଖିବେ ! ତେମେ

ପଣ୍ଡ ଏକୋଇର ବଣ୍ଡ ବର୍ଣ୍ଣିକେସନ ବେଳ ସେ ତମକୁ ମୁଣ୍ଡରେ ବସେଇଚନ୍ତି ।

ମନୁ—ମୁଣ୍ଡରେ ବସାନ୍ତେ ନ, ଆଜ କ'ଣ ଯାହା କହିଲେ, ତୋ'ଭଳିଆ ନାଇଁ, ନାଇଁ ହନ୍ତେ ! ଉଁ-ଉଁ-ଉଁ…

[ମନୁ କାନ୍ଦିବାର ଛଳନା କଲା]

ହରିଆ—ଓହୋ ! କାଇଁକି ସିମିତି ହଉଚ ଭଲା ? ହଉ ହେଲା, ଯାହା କହିବ ମାନିବି ।

ମନୁ—ମାନିବୁ ! ଏ ଟାଇପ୍ ମେଶିନ୍‌ଟାକୁ ଆଗ ଏଠୁ ଉଠା ।

ହରିଆ—ନାଇଁ, ବଡ଼ବାବୁ ମେତେ ଗାଳିଦେବେ ।

ମନୁ—ପୁଣି ବଡ଼ବାବୁ ! କହିଲି ପରା—ମୁଁ ଇଲେ ଏ ଘରେ ବଡ଼ବାବୁ । ଯାହା କହୁଚି ସେଇଆ କର । ନଇଲେ, ଉଁ-ଉଁ…

[ମନୁ ପୁଣି ମିଛରେ କାନ୍ଦିଲା]

ହରିଆ—ନାଇଁ, ଯାହା କଇବ, ସେଇଆ କରିବି ।

ମନୁ—ତେବେ ଉଠା ଯୁାକୁ ଏଠୁ ।

ହରିଆ—ଉଠଉଚି ବାବୁ, ଉଠଉଚି ।

ମନୁ—ଆଜ ଏ ବହି କାଗଜପତ୍ରଗୁଡ଼ାକ ଏଠୁ ନେଇ ବାହାରେ ଫୋପାଡ଼ିଦେ ।

ହରିଆ—ଏକବାରେ ବାହାରେ ? ଏଇ ଘରକଣକୁ ରଖିଦେଲେ ହବନି ?

ମନୁ—ପୁଣି ଗୋଳମାଳ କଲୁ ! ଯା' କହୁଚି ସେଇଆ କର ।

ହରିଆ—(ଦୁଃଖରେ ମୁଣ୍ଡରେ ହାତ ମାରି) ହଉ !

[ହରିଆ ଟାଇପ୍ ମେସିନ୍ ନେଇ ବାହାରକୁ ଗଲା । ମନୁ ହସୁଥାଏ । ତା'ପରେ ମନୁ ଟେବୁଲରେ ଥିବା ବହି, କାଗଜପତ୍ରଗୁଡ଼ାକ ଦେଖାଦେଖି କରି ବିରକ୍ତି ପ୍ରକାଶ କଲା । ହରିଆ ଫେରି ଆସିଲା ।]

ମନୁ—(ବହି, କାଗଜପତ୍ର ଦେଖାଇ) ଏଗୁଡ଼ା ଏଠୁ ଉଠା ।

ହରିଆ—ଏଁ, ଏଗୁଡ଼ା କାଇଁ ଉଠେଇବି ? ବଡ଼ବାବୁଙ୍କ…

ମନୁ—ଉଠା କହୁଚି ।

ହରିଆ—ସେଗୁଡ଼ା ତମର କ'ଣ ଖରାପ କରୁଚି ।

ମନୁ—କରୁନ ? ସବୁବେଳେ ଏଗୁଡ଼ା ଯୋଗେ ବାପା ଗଡ଼ର ଗଡ଼ର ହଉଚନ୍ତି । ଖାଲି ମାଲମକଦ୍ଦମା, ଫଉଦାରି ।

ହରିଆ—ହ'ନ୍ତେ ନ ! ବାବୁ ଓକିଲ ହୋଇଚନ୍ତି । କେତେ ଟଙ୍କା ରୋଜଗାର କରୁଚନ୍ତି—

ମନୁ—ରୋଜଗାର ଆମର ଦରକାର ନାହିଁ । ରୋଜରୋଜ ଖାଲି ଗୋଳମାଳ । ଭଲ କାହାଣୀ କହିବା ନାହିଁ, ଭଲ ଖେଳର ବନ୍ଦୋବସ୍ତ ନାହିଁ···

ହରିଆ—ଖାଲି ସେଇଗୁଡ଼ା ବନ୍ଦୋବସ୍ତ କଲେ ପେଟ ପୂରିଯିବ···

ମନୁ—ହରିଆ ! ମୁଁ ଉଠା କହୁଚି ।

ହରିଆ—ନା, ମୁଁ ଉଠେଇବି ନ ।

ମନୁ—ଉଠେଇବୁ ନ ?

ହରିଆ—ନା ।

ମନୁ—ଉଁ-ଉଁ··· [ପୁଣି କାନ୍ଦିଲା]

ହରିଆ—ନା, ଉଠଉଚି, ଉଠଉଚି···

ମନୁ—ଜଲ୍‌ଦି ଉଠା ।

[ହରିଆ ବହି ଓ କାଗଜପତ୍ର ଧଇଲା । ମନୁ ସେସବୁ ତା' ଉପରେ ନଦଦେଲା । ସେସବୁ ନେଇ ହରିଆ କଷ୍ଟେମଷ୍ଟେ ବାହାରକୁ ଗଲା । ମନୁ କୁଣ୍ଢେଇବାକ୍‌ସ ସଜାଡ଼ିଲା ।]

ହରିଆ—(ଫେରିଆସି) ବାହାରେ ରଖିଦେଲି ।

ମନୁ—(କୁଣ୍ଢେଇବାକ୍‌ସ ଦେଖାଇ) ନେ, ଏସବୁ ନେଇ ଟେବୁଲ୍ ଉପରେ ସଜାଡ଼ି ରଖ ।

ହରିଆ—ଏ କୁଣ୍ଢେଇଗୁଡ଼ା ଟେବୁଲ ଉପରେ ରଖିବି ?

ମନୁ—ପୁଣି ! ରଖିବୁ ନା !

[ହରିଆ କୁଣ୍ଢେଇବାକ୍‌ସରୁ କୁଣ୍ଢେଇଗୁଡ଼ିକ କାଢ଼ି ଟେବୁଲ ଉପରେ ସଜାଡ଼ିବାକୁ ଆରମ୍ଭ କଲା । ମନୁ ଆନନ୍ଦରେ ଗୁହୁଁଥାଏ ।]

ହଶଆ—(କୁଣ୍ଢେଇ ସଜାଡ଼ୁ ସଜାଡ଼ୁ) ଖାଲି ଏଇଥିରୁ ଗୁଡ଼େ ମାଗ ନାଗିଶ । ପାଠ ନାଇଁ ଶାଠ ନାଇଁ । ମୁଁ ଏ ପାଇଛି ପାଶବନ ।

[ହଶଆ ହାତ ବନ୍ଦ କଲା ।]

ମନୁ--ପାଶବୁ ନ ? ଉଁ-ଉଁ···

[ମନୁ ଛଳନା କରି ପୁଣି କାନ୍ଦିବାକୁ ଆରମ୍ଭ କଲା ।]

ହଶଆ—ଓହୋ, ନାଇଁ ପାଶବ, ପାଶବ ।

[ହଶଆ ପୁଣି ଖେଳନା ସଜାଡ଼ିଲା ।]

ମନୁ—ଦେଖୁଛୁ ହଶଆ, ମୋ ମଟରଗାଡ଼ି ଚାଲିବାପାଇଁ ଏ ଟେବୁଲ କେମିତି ବଢ଼ିଆ ହେଇଛି । ଖାଲି ଛାଡ଼ିଦେଲେ ସର୍‌ସର୍ ଚାଲିଯିବ ।

[ମନୁ ଗୋଟିଏ ମଟରଗାଡ଼ି ହଶଆ ଆଡ଼କୁ ଛାଡ଼ିଦେଲା । ହଶଆ ଚମକିପଡ଼ି ଗୁଡ଼ିରେ ହାତ ପକେଇଲା ।]

ମନୁ—(ହାତରେ ଖଣ୍ଡେ ବାଡ଼ି ଧରି ଓ ଘୋଡ଼ାଗାଡ଼ି ଚଲେଇ)

ଟମ୍ ଟମ୍ ଟମ୍ ଘୋଡ଼ାର ଗାଡ଼ି,
ସଡ଼କ ଉପରେ ଯାଉଛି ମାଡ଼ି ।
ହେ ହେ ବାଟ ଛାଡ଼, ବାଟ ଛାଡ଼,
ନଇଲେ ଖାଇବୁ କୋରଡ଼ା ମାଡ଼ ।

[ମନୁ ହଶଆକୁ ବାଡ଼ିରେ ପାହାରେ ଦେଲା ।]

ହଶଆ—ଓହୋ, ମେତେ କାଇଁ ମାରୁଚ ?

ମନୁ—ତୁ ବାଟ କାଇଁ ଛାଡ଼ୁନୁ ? (ମଟର ଚଳାଇ)

ପଁ ପଁ ପଁ କଳମଟର
ଚାଲିଯାଏ ବେଗେ ଘର୍ ଘର୍ ।
ଭିତରେ ବସିଛି ରାଜକୁମାରୀ
ଢଳ ଢଳ ରୂପ ଅତି ସୁନ୍ଦରୀ ।

ହଶଆ—ରାଜକୁମାରୀ ନା, ଏ ଗନ୍ଧିଆ ଅପରିଚ୍ଛନ୍ନ କୁଣ୍ଢେଇଟା ।

ମନୁ—ହେ, ହେ ବାଟ ଛାଡ଼, ନଇଲେ ଖାଇବୁ କୋରଡ଼ା ମାଡ଼ ।

[ ପୁଣି ହଶଆକୁ ପାହାରେ ଦେଲା । ]

ହଶଆ—ଓହୋ, ମରିଗଲି ଲୋ !

ମନୁ—(ରେଳ ଚଳାଇ)

ଲାଲ ଝଣ୍ଡ ଝଣ୍ଡ ଆଖି ଉଗ୍ରଛି
ରେଳଗାଡ଼ି ଆସେ ଦୂରୁ ଝଁପଛି (ପାଟିରେ ହାତଦେଇ)

ଝୁ-ଝୁ, ଧପ୍-ଧପ୍ [ମନୁ ରେଳଗାଡ଼ି ପରି ଶବ୍ଦ କଲା]

ହଁ‍ା, ହଁା, ନାଇଁ ସିଗ୍‌ନାଲ
ସଁ, ସଁ, ସଁ, ରହିଲା ରେଲ
ବାଃ ରେ ବାଃ ବାଃ ରେ ବାଃ ।

[ ଏହି ସମୟରେ ରଙ୍ଗମଞ୍ଚ ଅନ୍ଧାର ହୋଇଗଲା । କେବଳ ମନୁ ମୁହଁ ଦେଖାଯାଉଥାଏ । ଦେଖାଗଲା କେତେ ଜଣ ପିଲା ଘୋଡ଼ାଗାଡ଼ି, ମଟର ଓ ରେଲର ଖୋଳ ପିନ୍ଧି ନାଚ ନାଚ ଚାଲିଗଲେ । ମନୁ ଗୀତ ବୋଲୁଥାଏ । ]

ମନୁ—ବାଃ ରେ ବାଃ ବାଃ ରେ ବାଃ ।

[ ରଙ୍ଗମଞ୍ଚ ପୂର୍ବ ଅବସ୍ଥାକୁ ଫେରି ଆସିଲା । ]

ନାଇଁ ଏ ଟେବୁଲ୍‌ରେ ସୁବିଧା ହଉନି । ଏଇ ତଳେ ଗାଡ଼ି ଚାଲିବ ହେ ହରିଆ । ଏ ଆଲମାରି ଏଠୁ ଉଠା ?

ହରିଆ—କାହିଁକି ? ସେ କି ଦୋଷ କଲା ?

ମନୁ—ତଳେ ଗାଡ଼ି ଚାଲିବ ପରା !

ହରିଆ—ଚାଲୁ

ମନୁ—ଜାଗା ହବନି

ହରିଆ—ଏତେ ଯାଗା ଖାଲି ପଡ଼ିଛି । ଆଉ ଏ ଆଲମାରିଟା···ନାଇଁ ବଡ଼ବାବୁ ମୋ' ଉପରେ ବେଜାର ହେବେ !

ମନୁ—ପୁଣି ବଡ଼ବାବୁ ବଡ଼ବାବୁ ହେଲୁ ! ମୁଁ ଯା' କହୁଛି ସେଇଆ କର ।

ହରିଆ—ଏ ଆଲମାରିଟା ତମର କ'ଣ କରୁଛି ଯେ ?

ମନୁ—କହିଲି ପରା ଅସୁବିଧା କରୁଛି । ସାଇକେଲ ଚଲେଇବାକୁ କି ବଲ ଖେଳିବାକୁ ଜାଗା ହଉନି । ରେଲ, ମଟର ଚଲେଇବାକୁ ରାସ୍ତା ନାହିଁ ?

ହରିଆ—ଏଠି ନ ଖେଳିଲେ କ'ଣ ହଅନ୍ତା ନ ?

ମନୁ—ପୁଣି ଗୋଳମାଳ କଲୁ ! ଉଠା କହୁଛି ।

ହରିଆ—କମିତି ଉଠେଇବି ? ମୁଁ କ'ଣ ଏକା ପାରିବି ?

ମନୁ—ସେ ମାଳିକି ଡାକୁନୁ ।

ହରିଆ—ମାଳିର ଆଉ କାମ ନାହିଁ ?

ମନୁ – ଏ କ'ଣ କାମ ନୁହେଁ ? ଯା' ଡାକ୍ ।

ହରିଆ—ଯାଉଚି ।

[ ହରିଆ ମୁହଁ ଫାଉଁ ଫାଉଁ କରି ଚାଲିଗଲା । ]

[ ମନୁ ଖେଳନା ଧରି ଖେଳିଲା । ଏହି ସମୟରେ ପ୍ରବେଶ କଲେ ଜଣେ ସନ୍ୟାସୀ । ପିନ୍ଧିଛନ୍ତି ଗେରୁଆ ଲୁଗା । ହାତରେ, ଛାତିରେ ଓ ମୁଣ୍ଡରେ ଚନ୍ଦନଚିତା । ଦେହସାକ ପାଉଁଶ ବୋଳା ହୋଇଛି । ହାତରେ ଧରିଛନ୍ତି କମଣ୍ଡଳୁ ଓ ଆଶାବାଡ଼ି । ଗୋଡ଼ରେ ପିନ୍ଧିଛନ୍ତି କଠାଉ । ବେକରେ ପକାଇଛନ୍ତି ମାଳି । ]

ବାବାଜି—ଜୟ ବଂ ବଂ ହର ହର ଭୋଲା । ଗଣ୍ଡେ ଭିକ ମିଳିଯାଉ ଶ୍ରେଷ୍ଠବାବୁ ।

ମନୁ—ଇଲେ ଭିକ ଫିକ ମିଳିବ ନ । ମୁଁ କାମ କରୁଚି ।



ବାବାଜି—ଜୟ ବଂ ଭୋଲନାଥ । ଦଅନା ଶ୍ରେଷ୍ଠବାବୁ ଗଣ୍ଡେ ଭିକ ।

ମନୁ—ନା, ଭିକ ମିଳିବନି ।

ବାବାଜି—ଓଁ ବଂ ବଂ ହରି ହରି ଶୋଲ । ହ୍ରୀଁ କ୍ଲୀଁ

ଆଇଁଷୀ ମନ୍ତ୍ର କାଇଁଷୀ ମନ୍ତ୍ର

ପିଠାକୁ ମନ୍ତ୍ର ସୁଆଣୀ

ମୋ ଠଉଁ ଯେ ମନ୍ତ୍ର ଶିଖିବ

ତାକୁ ମାରିଦେବ ଧ କଣ୍ଢୁଣୀ ।

ଲଗେ ଲଗେ ବୋଲ କାହାର ଆଜ୍ଞା

କାଉଁସି କାମଚଣ୍ଡୀ ଛତିଆ ସାଧୁବାବାଙ୍କର କୋଟି କୋଟି ଆଜ୍ଞା ।

ଗରିବ ବାବାଜିକୁ କିଛି ମିଳିଯାଉ ଗ୍ଲେଟବାବୁ ।

ମନୁ—ଗ୍ଲେଟବାବୁ କ'ଣ ! ହେ ବା'ଜି, ଚାଲିଯାଅ ଏଠୁ । ଆମର ଗ୍ଲେଟବାବୁ ହବା ଦରକାର ନାହିଁ କି ଭିକ ଦବା ଦରକାର ନାହିଁ ।

ବାବାଜି—କାଇଁକି ଏମିତି ରଗିଉ ଯାଉଚ ଗ୍ଲେଟବାବୁ ? ବା'ଜିଙ୍କି ଗଣ୍ଡେ ଭିକ ମିଳୁ ।

ମନୁ—ତୁମ କଥା ଶୁଣି ତୁମକୁ ସୁନା ମୁଣ୍ଡେ ଦେଇଦବ କୁ ମନ ହେଉଚି ।

ବାବାଜି—କାଇଁକି ଏମିତି ରାଗୁଚ ଗ୍ଲେଟବାବୁ !

ମନୁ—ରାଗିବି ନି ! ତୁମେ ବାବାଜି ହୋଇ ସବୁବେଳେ ଦିଅଁଙ୍କ ନାଁ ନଉଚ, ଗୀତ-ଭଜନ ବୋଲୁଚ, ହେଲେ କଥା କିମିତି କହିବାକୁ ହୁଏ, ଶିଖିନ ।

ବାବାଜୀ—କାଇଁ ଗ୍ଲେଟବାବୁ ! ଆମ କଥା କ'ଣ ବେଆଡ଼ା ହେଲା କି ?

ମନୁ—ବେଆଡ଼ା ହେଲାନି ! ହୁକେନ ଆସି ଡାକୁଚ ଗ୍ଲେଟବାବୁ, ଗ୍ଲେଟବାବୁ ବୋଲି । ବାବୁ ତ ବାବୁ, ଗ୍ଲେଟବାବୁ କ'ଣ ?

ବାବାଜି—ଓ ହୋ, ସତେ ତ ! ମୋର ସେଟା ମସ୍ତ ଭୁଲ । ଏଟା ତ ଠିକ୍ ସେ କଣା ଭାଇ କଥାପରି ହେଲା ।

ମନୁ—କ'ଣ କଣାଭାଇ ?

ବାବାଜି—ଜଣେ ବାଟୋଇ ଆଖୁ କିଆରି ବାଟେ ଯାଉଥିଲା । ସେଠି କଣା ଲୋକ ଜଣେ ଆଖ ପେଉଥିଲା । ତାକୁ ଦେଖି ବାଟୋଇଟି

କହିଲା, କଣାଭାଇ, କଣାଭାଇ, ଖଣ୍ଡେ ଆଖି ଦେଲୁ । କଣା ଲୋକଟି ଉତ୍ତର ଦେଲା—ଆଖି କ'ଣ ! ତୋ କଥା ଶୁଣି ଗୁଡ଼ଖଣ୍ଡେ ଦେଇ ଦେବାକୁ ମନ ହଉଛି ।

ମନୁ—ହଁ, ତୁମେ ତ ସିମିତି କହୁଛ ।

ବାବାଜି—ହଉ, ଏଥର ଶହେଥର ବଡ଼ବାବୁ ବୋଲି କହୁଛି—ବଡ଼ବାବୁ, ବଡ଼ବାବୁ, ବଡ଼ବାବୁ, ବଡ଼ବାବୁ, ବଡ଼ବାବୁ......

ମନୁ—ହଉ ଥାଉ ।

ବାବାଜି—ତେବେ ଗରିବକୁ ଗଣ୍ଡେ ଭିକ ମିଳୁ ।

ମନୁ—ଆଚ୍ଛା ବାବା, ତମେ ସାଧୁ ହୋଇ ଭିକ ମାଗୁଛ କାହିଁକି ?

ବାବାଜି—ଭିକ ନ ମାଗିଲେ ଖାଇବି କ'ଣ ?

ମନୁ—କାହିଁ କାମ କରୁନ ?

ବାବାଜି—ମୁଁ ତ ସଂସାର ଜଞ୍ଜାଳ ଛାଡ଼ି ସନ୍ନ୍ୟାସୀ ହୋଇଛି । ପ୍ରଭୁଙ୍କ ନାମ ନେଉଛି । ଲୋକଙ୍କୁ ଧର୍ମ ଶିକ୍ଷା ଦେଉଛି । କାମ କରି ରୋଜଗାର କରିବା କ'ଣ ଦରକାର ? ଖାଲି ଜୀବନକୁ ରକ୍ଷା କରିବା ପାଇଁ ଚାଉଳ, ଡାଲି ଗଣ୍ଡେ ହେଲେ ହେଲା ।

ମନୁ—ଭିକ ମାଗି ଚଳିବା ଖରାପ । ଆମ ସାର୍ କହୁଥିଲେ ପରା, ପ୍ରତ୍ୟେକ ବଡ଼ ସମର୍ଥଙ୍କର କାମ କରିବା ଦରକାର ।

ବାବାଜି—ହଁ, ଦରକାର ଯେ, ହେଲେ ମୋର ତ ବଳ ବୟସ ଗଲାଣି, ମୁଁ କି କାମ କରିବି ?

ମନୁ—ଯାହା ପାରିବ । ଏମିତି ମାଗିଲେ କ'ଣ ଲୋକେ ତୁମକୁ ଭିକ ଦେଉଛନ୍ତି ?

ବାବାଜି—ହଁ କେହି କେହି ଦଉଚନ୍ତି । ତେବେ ମୁଁ ବେଶୀ ଲୋକଙ୍କୁ ମାଗେନି । ଖାଲି ଦିନକ ଖୋରାକ ପାଇଁ ଘରେ ଦି'ଘରକୁ ଯାଏ । ତୁମ ଇଚ୍ଛା ଯଦି ଦବ, ନଇଲେ ନାହିଁ । ଏତେ ବଡ଼ ଘରୁ (ମନୁକୁ ଦେଖାଇ) ଏଡ଼େ ବଡ଼ ବାବୁଙ୍କ ପାଖରୁ ଯଦି ଖାଲି ହାତରେ ଫେରିବି......

ମନୁ—(ଖୁସିହୋଇ) ନାଇଁ, ଖାଲି ହାତରେ କାହିଁ ଫେରିବ ! ଗୋଟେ କୁଣ୍ଢେଇ ନଅ ।

ବାବାଜି—ମୋର ସେ କ'ଣ ହବ ? ମୁଁ କ'ଣ ପିଲା ହେଇଚି !

ମନୁ—ହେଲେ ମୁଁ କ'ଣ କରିବ ? ବାପା କି ମା' କେହି ଘରେ ନାହାନ୍ତି । ଆଚ୍ଛା, କେତେ ପଇସା ପାଇଲେ ତୁମେ ଖୁସିହେବ ?

[ମନୁ ପକେଟରେ ହାତ ମାରିଲା]

ବାବାଜି—ଯାହା କିଛି ଅଛି, ଦିଅ । ବାବାଜି ଆଜି ଗଣ୍ଡେ ଭଲକରି ଖାଇବ ।

ମନୁ—ବେଶୀ ପଇସା ତ ମୋ ପାଖରେ ନାହିଁ । ତେବେ······

[ମନୁ ପକେଟ ଦଗଣ୍ଡିଲା]

ଆରେ ଅଛି ତ, ନଅ ଦଶ ପଇସା, ପାଞ୍ଚ ପଇସା ·····

ବାବାଜି—ଏତେ ପଇସା ? ତମ ବାପା ଗାଳିଦେବେ ନି ?

ମନୁ—ଗାଳିଦେବେ କାହିଁକି ? ପଇସା ତ ଖର୍ଚ୍ଚ କରିବା ପାଇଁ ହେଇଚି ।

ବାବାଜି—ଜୟ ବଂ ଭୋଲାନାଥ । ମୋ ବାବୁଙ୍କର କୋଟି ପରମାୟୁ ହେଉ ।

ମନୁ—ଧେତ୍, ସେ ପରମାୟୁରୁ ମୋତେ କ'ଣ ମିଳିବ ! ଆଚ୍ଛା ବାବା, ତୁମେ ଇଲେ କି ମନ୍ତ୍ର ପଢ଼ୁଥିଲ ?

ବାବାଜି—ବଡ଼ ବଢ଼ିଆ ମନ୍ତ୍ର ବାବୁ । ତାକୁ ଜାଣିଲେ, ଯା ଇଚ୍ଛା ତା' କରିପାରିବ । ଯେତେପାଠ ପଢ଼ିବ, ସବୁ ମନେ ରହିବ ।

ମନୁ—ସତେ ! ତେବେ ମତେ ସେଇଟା ବତେଇ ଦିଅନା ବାବା ! ମୁଁ ତୁମକୁ ଆଉ ପଇସା ଦେବ । ଏ ପାଠଗୁଡ଼ା ମୋର ଜମା ମନେ ରହୁନି । ଆଉ ଯା ହଉଚି, ଏ ଯୁଁ ଭୂଗୋଳ—ବ୍ଲଡ଼ଭଷ୍ଟକ୍, ଗ୍ରେଡ଼ଜେନେରେ······

ବାବାଜି—ଏଥର ସବୁ ମନେ ରହିଯିବ । ହଉ ମନ୍ତ୍ର ଶିଖ—

ଆଇଁଷୀ ମନ୍ତ୍ରର, କାଇଁଶୀ ମନ୍ତ୍ରର
ପିଠାକୁ ମନ୍ତ୍ରର ଜୁଆଣୀ
ମୋ'ଠାରୁ ଯେ ମନ୍ତ୍ରର ଶିଖିବ
ମାରିଦେବ ଢ' କହୁଣୀ ।

ମନୁ—ଧେତ୍, ଏଗୁଡ଼ା କ ମନ୍ତ୍ର ! ମତେ ଜମା ଭଲ ଲାଗୁନି ।

ବାବାଜୀ—ଭଲ ମନ୍ତ୍ର ନା । ଶିଖ । ଆଇଁଷୀ ମନ୍ତର, କାଇଁଶୀ ମନ୍ତର......

[ମନୁ ମନ୍ତ୍ର ଘୋଷିଲା]

ମନୁ—ତେବେ କଦ୍ରୁଣୀ ମାରିବ କାହିଁକି ?

ବାବାଜୀ—ନାଇଁ ମ ! ସତରେ କ'ଣ ମାରିବ ? ମନ୍ତରରେ ସେମିତି ଅଛି ନା......

ଆଇଁଷୀ ମନ୍ତର କାଇଁଷୀ ମନ୍ତର
ପିଠାକୁ ମନ୍ତର ଜୁଆଣି
ମୋ' ଠାରୁ ଯେ ମନ୍ତର ଶିଖିବ
ମାରିଦେବ ଦ' କଦ୍ରୁଣି ।

ଲାଗେ ଲାଗେ ବୋଲି କାହାର ଆଜ୍ଞା
କାଉଁରୀ କାମଚଣ୍ଡୀ ଛଣ୍ଡିଆ ସାଧୁ ବାବାଙ୍କର
କୋଟି କୋଟି ଆଜ୍ଞା ।

[ମନୁ ମନ୍ତ୍ର ଶିଖୁ ଶିଖୁ ଖାତାରେ ତାକୁ ଟିପିନେଲା ।]

ମନୁ—ଆଚ୍ଛା ବାବା, ତୁମକୁ ହାତଦେଖି ଆସେ ?

ବାବାଜୀ—ହଁ, ଖୁବ୍ ଭଲ ଦେଖିଆସେ । ଗୃହିଁବାମାତ୍ରେ ଆଗତ, ଭବିଷ୍ୟ ତ୍ରିକାଳ କଥା କହିଦେବ ।

ମନୁ—ସତେ ? ଆଚ୍ଛା ମୋ' ହାତ ଦେଖିଲ, ସେଥିରେ କ'ଣ ଲେଖା ହୋଇଚି ? ମୁଁ କେତେ ପାଠ ପଢ଼ିଲିଣି, ହେଲେ ଏ ହାତ ଦ'ଟାରେ କ'ଣ ଲେଖା ହୋଇଚି ଜାଣିପାରୁନି । ବନ୍ଧୁ ଅବଧାନ ବାପାଙ୍କ ହାତ ଦେଖି କେତେ କ'ଣ ଜାଣିପାରେ । କେତେ କ'ଣ କହିଦିଏ ।

ବାବାଜୀ—ତୁମେ ବି ଜାଣିପାରିବ । ତୁମେ ବି କହିପାରିବ । ହେଲେ ସେ ବଡ଼ ଗହନ ବିଦ୍ୟା । ସେଥିପାଇଁ ଚେଷ୍ଟା କରିବାକୁ ହେବ । ଦେଖି ବାବୁ ତୁମ ହାତ ।

[ବାବାଜୀ ମନୁର ହାତ ଦେଖିଲେ ।]

ବାବାଜୀ—ଙ୍ ଙ୍ ହର ହର ଓଁ ହ୍ରୀଁ କ୍ଲୀଁ

ଆଇଁଷୀ ମନ୍ତର କାଇଁଷୀ ମନ୍ତର

ଘଡକୁ ମନ୍ତର ଚଟଣି

ପିଠାକୁ ମନ୍ତର ଜୁଆଣି

ଲଗେ ଲଗେ ବୋଲ କାହାର ଆଜ୍ଞା

କାଉଁଶ କାମଚଣ୍ଡୀ ମଙ୍ଗଳା-ସାରଳାଙ୍କ

କୋଟି-କୋଟି ଆଜ୍ଞା ।

ବାବୁ, ତୁମର ତ ବଡ଼ ବଢ଼ିଆ ହାତଟେ !

ମନୁ—ସତେ, ବଡ଼ ବଢ଼ିଆ ? ମୁଁ ବଡ଼ ହେଲେ କ'ଣ ହେବ ?

ବାବାଜୀ—ତୁମେ, ତୁମେ ବଡ଼ ହେଲେ ବାବୁ, ଗୋଟେ, ଗୋଟେ

ମନୁ—ଗୋଟେ ?

ବାବାଜୀ—ନାମଜାଦା ଓକିଲ ହବ ।

ମନୁ—ଓକିଲ ! ତା' ମାନେ ବାପାଙ୍କ ଭଳି ଆଖିରେ ଚଷମା ଦେଇ ବହିଗୁଡ଼େ ପଢ଼ିବି । ଯେତେ ଚୋର, ଖୁଣୀ, ଦଲାଲ ମୋ' ପାଖକୁ ଆସିବେ । ଛି, ଛି । ନା, ନା, ବାବା ତମେ ଯାଅ । ଆଉ ତୁମକୁ କିଛି ମିଳିବନି ।

ବାବାଜୀ—ମିଳିବନି ! ମୁଁ କେତେ କଷ୍ଟରେ ହାତ ଦେଖିଲି । ଆଚ୍ଛା ତୁମେ ବଡ଼ ହେଲେ···

ମନୁ—ବଡ଼ ହେଲେ ମୁଁ ଫୁଟବଲ ଖେଳିପାରିବି କି ନାହିଁ, ଦେଖିଲ ।

ବାବାଜୀ—ଫୁଟବଲ ! ସତେ ତ ବାବୁ, ଏଇଠି ସବୁ ଲେଖା ହୋଇଚି । ଏକ, ଦୁଇ, ତିନି, ଚାରି, ପାଞ୍ଚ, ଛଅ, ସାତ···

ମନୁ—ଏତେ କ'ଣ ବାବା ?

ବାବାଜୀ—ଗୋଲ ବାବୁ ଗୋଲ । ତୁମେ ବଡ଼ ହେଲେ ଖୁବ୍ ଭଲ ଖେଳିବ । ଆଜି ପ୍ରତି ଖେଳରେ ଗଣ୍ଡା ଗଣ୍ଡା ଗୋଲ ଦବ ।

ମନୁ—ସତେ ! ଗଣ୍ଡା ଗଣ୍ଡା ଗୋଲ୍ ଦେବ ! ନାଇଁ ତୁମେ ଖାଲି ମିଛରେ ଯୋଡ଼ଯାଡ଼ କହୁଦଉଚ ।

ବାବାଜୀ—ନାଇଁ ମିଛରେ କାଇଁ କହିବ । ଏଇଠି ଲେଖା ହେଇଚି ସବୁ ।

ମନୁ—କାଇଁ ମୁଁ ତ କିଛି ଦେଖିପାରୁନ । ନାଇଁ ତୁମ ଏ ଜ୍ୟୋତିଷବିଦ୍ୟା ଖାଲି ଠକାଠକ କରବାର । ହଉ, ତୁମେ ଆଉ କିଛି ପଇସା ନେଇଯାଅ । ହେଲେ ଏ ମିଛ କାରବାର ଛାଡ଼ ।

[ମନୁ ଆଉ ପଇସା ଦେଲା ।]

ବାବାଜୀ—ବାଃ, ଆମ ମନୁବାବୁ ତ ବଡ଼ ବଢ଼ିଆ ବାବୁ ।

ମନୁ—ବଡ଼ବାବୁ !

ବାବାଜୀ—ହଁ, ହଁ ବଡ଼ବାବୁ । ମୋ ବଡ଼ବାବୁଙ୍କର ବହୁତ ପରମାୟୁ ହେଉ । ବହୁତ ପାଠ ପଢ଼ି ବଡ଼ ଓକିଲ···

ମନୁ—ଫୁଟବଲ୍, ଫୁଟବଲ ?

ବାବାଜୀ—ହଁ, ହଁ, ଫୁଟବଲ୍ ଖେଳ ଗଣ୍ଡା ଗଣ୍ଡା ଗୋଲ୍ ଦିଅନ୍ତୁ ।

ମନୁ—ଆଚ୍ଛା ବାବା, କ୍ରିକେଟ ?

ବାବାଜୀ—କକେଟ୍ ?

ମନୁ—କ୍ରିକେଟ୍ !

ବାବାଜୀ—କ'ଣ କ୍ରୁଁ, କ୍ଲୁଁ, ମନ୍ତ୍ର ?

ମନୁ—ମନ୍ତ୍ର ନୁହେଁ ଖେଳ ।

ବାବାଜୀ—କ ଖେଳ ?

ମନୁ—କ୍ରିକେଟ୍ ଖେଳ । କ'ଣ ତୁମେ ଏତେ ହାତ ଦେଖୁଚ, ଏତେ କଥା ଜାଣୁଚ !

ବାବାଜୀ—ଓଃ ! କକେଟ୍ ଖେଳ ?

ମନୁ—କକେଟ୍ ନୁହେଁ, କ୍ରିକେଟ୍ ।

ବାବାଜୀ—ହଁ, ହଁ, କ-କ୍ରିକେଟ୍ ଖେଳ । କ'ଣ ହେଲା, କ-କ୍ରିକେଟ୍ ଖେଳର ?

ମନୁ—ସେ ଖେଳ ମୁଁ କମିତି ଖେଳିବ ?

ବାବାଜୀ—ଓଃ, ସେ ଖେଳରେ ତ ତମେ ଗଣ୍ଡା ଗଣ୍ଡା ଗୋଲ ଦବ ।

ମନୁ—ଧେତ୍ ସେଥିରେ ଗୋଲ ନାହିଁ; ରନ୍, ବ୍ୟାଟ୍, ବୋଲିଂ···ବୋଲିଂ ଯଦି ଜୋର୍‌ରେ ହେଲା ନା, ତୁମ ଓ୍ୱିକେଟ୍ ତ ପଡ଼ିଯିବ ।

ବାବାଜୀ—(ହାତଦେଖି) ହଁ, ହଁ, ତୁମ ଓ୍ୱିକେଟ୍ ବ ପଡ଼ିଯିବ । ଥରେ ନୁହେଁ, ଦ' ଥର ନୁହେଁ, ଲଗେ ଲଗେ ପାଞ୍ଚଥର ।

ମନୁ—ଏଁ, ମୋ ଓ୍ୱିକେଟ୍ ପାଞ୍ଚଥର ପଡ଼ିଯିବ ! ତୁମେ ଗଲ ଏଠୁ ।

ବାବାଜୀ—କାହିଁ, କ'ଣ ହେଲା ?

ମନୁ—ମୋ' ଓ୍ୱିକେଟ୍ ପାଞ୍ଚଥର ପଡ଼ିବ, ମୁଁ ଆଉ ଖେଳିବି କ'ଣ ?

ବାବାଜୀ—ଓ, ଏକଥା ! (ହାତ ଚନ୍ନ ଚନ୍ନ କରି ଦେଖି) ପଡ଼ିବ-ପଡ଼ିବ ପଡ଼ିବନି-ପଡ଼ିବନି ।

ମନୁ—(ଆନନ୍ଦରେ) ମୋ' ଓ୍ୱିକେଟ୍ ପଡ଼ିବନି, ଜମା ପଡ଼ିବନି ?

ବାବାଜୀ—(ବୁଝିପାରି) ଏଇଠି ଏ 'ନା' ଟା ଅଛି, ମୁଁ ଜାଣିପାରୁନି ।

ମନୁ—(ହାତକୁ ଦେଖି) ଏଇଠି ଅଛି ?

ବାବାଜୀ—ହଁ, ଏଇ ପାପୁଲି କଡ଼ରେ ଲୁଚିକରି ଅଛି ପରା ।

ମନୁ—ତେବେ ମୁଁ କ୍ରିକେଟ୍ ଭଲ ଖେଳିବି ?

ବାବାଜୀ—ବଡ଼ ବଢ଼ିଆ ଖେଳିବ ନା ।

ମନୁ—ସଟାଙ୍ଗ୍ ଦସେ ବଲ ପକେଇବି । ଭଡ଼ାଙ୍ଗ୍ ଦସେ ବ୍ୟାଟ୍ ପିଟିବି ?

ବାବାଜୀ—(ହାତକୁ ଦେଖି) ହଁ, ହଁ, ଖାଲି ସଟାଙ୍ଗ୍—ଫଡ଼ାଙ୍ଗ୍, ସଟାଙ୍ଗ୍—ଫଡ଼ାଙ୍ଗ୍ ।

ମନୁ—(ଖୁସି ହୋଇ) ଆଚ୍ଛା, ତୁମେ ଇଲେ ଯାଅ ବାବା । ପଛକୁ ଆସିବ । ମୁଁ ବୋଉଠୁ ଆଣି ଆଉ ବହୁତ ପଇସା ଦେବି । ହେଲେ ତୁମେ ମିଛ କହୁନ ତ !

ବାବାଜୀ—ନା, ନା, ମିଛ କାହିଁ କହିବି ଛୋଟବାବୁ ନା ବଡ଼ବାବୁ । ଓଁ ବଂ ବଂ ହର ହର··· [ବାବାଜୀ ଚାଲିଗଲେ]

ମନୁ—ବାଃ, ବାଃ, ଏକାବେଳକେ ଗଣ୍ଡା ଗଣ୍ଡା ଗୋଲ୍ । ଫ୍ରିକେଟ୍ ବଲ ସଟାଙ୍ଗ୍ ଦସେ ମାରିବ । ବ୍ୟାଟ୍ ଫଡ଼ାଙ୍ଗ ଦସେ ପିଟିବ ! ହରିଆ, ହରିଆ !

ହରିଆ—(ପ୍ରବେଶ କରି) କ'ଣ ଆଜ୍ଞା !

ମନୁ—ତୁ ଏଠୁ ଘର ଆଲମାରି ଉଠଉଥିଲୁ ?

ହରିଆ—ନ ଉଠେଇଲେ ହନ୍ତାନ ! ସେ ବାବାଜୀ ସଙ୍ଗେ ଏତେ କ'ଣ ଗପସପ ହଉଥିଲ ?

ମନୁ—ଗପସପ ନୁହେଁ, ମନ୍ତ୍ର ଶିଖୁଥିଲି, ମନ୍ତ୍ର ।

ହରିଆ—କି ମନ୍ତ୍ରର ମ ! କହୁଁ—ଚୁଲି ।

ମନୁ—ବଡ଼ ବଢ଼ିଆ ମନ୍ତ୍ର—ଆଇଁଷୀ ମନ୍ତ୍ରର କାଇଁଷୀ ମନ୍ତ୍ରର···ଯୁାକୁ ଶୀଘ୍ର ଉଠା । ମୁଁ ଫୁଟବଲ ଖେଳିବ । ବୁଝିଲୁ ହରିଆ, ଗୋଟେ ନୁହଁ, ଦ'ଟା ନୁହଁ, ଖାଲି ଗଣ୍ଡା ଗଣ୍ଡା ଗୋଲ୍ । ଆଇଁଷୀ ମନ୍ତ୍ରର କାଇଁଷୀ ମନ୍ତ୍ରର··· । ତୁ ଯଦି ବଲ ହୋଇଥାନ୍ତୁ ନା ହରିଆ, ତତେ ସଟାଙ୍ଗ କରି ମାରି ଦିଅନ୍ତି ଯେ···

[ ବଲ ମାରିଲା ଭଳି ହରିଆକୁ ଗୋଇଠା ମାରିଲା । ହରିଆ ପଡ଼ିଗଲା । ]

ହରିଆ—ଓହୋ, କେଡ଼େ ହେଁ ମାଇଲ ମ' ଗ୍ଲେଟବାବୁ !

ମନୁ—ପୁଣି ଗ୍ଲେଟବାବୁ !

ହରିଆ—ନାଇଁ ବଡ଼ବାବୁ !

ମନୁ—କ'ଣ ଆଲମାରି ଉଠେଇବୁ ନା ଫାଜଲାମି କାଢ଼ିବୁ ? ଆଇଷୀ ମନ୍ତ୍ରର କାଇଁଷୀ ମନ୍ତ୍ରର···

ହରିଆ—କ'ଣ ସେ ଠକ ବାବାଜଠାରୁ ଏଣୁତେଣୁ ଗୁଡ଼ାଏ ଶିଖି···

ମନୁ—ତୁ ଆଗ ଆଲମାରି ଉଠେଇଲୁ ।

ହରିଆ—ସେ ମାଳୀଟା ଆସିଯାଉ । ମୁଁ କ'ଣ ଏକା ପାରିବ ? ଆଚ୍ଛା, ଗ୍ରେଟ—ନା, ବଡ଼ବାବୁ, ତମେ ଟିକେ ଏଇଠି ଖେଳୁଥାଅ । ମୁଁ ଘରଦ୍ୱାର ଓଳେଇଦିଏ । ମୋର କେତେ କାଇଟି ପିଆଡ଼େ ପଡ଼ିଛି···

ମନୁ—ରଖ୍ ସେ ପାଇଟି । ମୁଁ ଯାହା କହୁଛି, ସେଇଆ କର । ଜଲଦି ଆଲମାରି ଉଠା । ଆଇଁଷି ମନ୍ତର, କାଇଁଷି ମନ୍ତର······

[ହରିଆ ଆଲମାରି ଉଠେଇବାକୁ ଚେଷ୍ଟା କଲା । କିନ୍ତୁ ପାରିଲାନି ।]

ହରିଆ—ଦେଖୁନ, କେଡ଼େ ଭାରି ହେଇଛି । ରହ ଟିକେ, ମାଳୀ ଆସିଯାଉ ।

ମନୁ—କ'ଣ ସେ ମାଳୀ ଏତେବେଳ ଯେ କରୁଛି ?

ହରିଆ—ସେ କ'ଣ ପେଟ ବଗିଚାରେ କରୁଛି । ତାକୁ ଡାକିଲେ ସିନା ଆସିବ । ତୁମେ ଏ ଖେଳନା ଖେଳୁନ । ଏତେ ଘୋଡ଼ା ହାତି ରଖିଛ ।

ମନୁ—ଆଚ୍ଛା, ତୁ ଆଣ୍ଠୁମାଡ଼ି ବସିଲୁ ।

ହରିଆ—କାଇଁକି ?

ମନୁ—ବସନା ।

ହରିଆ—ବସିବାକୁ ମୋର ବେଳ ନାଇଁ । ତେଣେ କେତେ କାଇଟି ପଡ଼ିଛି ।

ମନୁ—ବସ୍ କହୁଛି । [ହରିଆ ଟେକା ପକାଇ ବସିଲା ।]

ମନୁ—ସେମିତି ନୁହଁ, ଆଣ୍ଠୁମାଡ଼ି ବସ ।

ହରିଆ—ଆଣ୍ଠୁମାଡ଼ି ବାବୁ ! ପିଲାଦିନେ ମତେ ଅବଧାନ ଆଣ୍ଠୁମାଡ଼ି ବସିବାକୁ କହିଲାରୁ ମୁଁ ଇସ୍କୁଲ ଛାଡ଼ିଦେଲି । ପୁଣି ଆଣ୍ଠୁମାଡ଼ି ବସିବି ?

ମନୁ—ବସ୍ କହୁଛି ।

ହରିଆ—ନାଇଁ, ବସୁଛି, ବସୁଛି ଆଜ୍ଞା । ଆଉ କ'ଣ କରିବ ? ଗୁଳକର ତ କରିଛି । [ହରିଆ ଆଣ୍ଠୁମାଡ଼ି ବସିଲା ।]

ମନୁ—ହାତ ଦି'ଟା ଆଗକୁ ପକା ।

[ହରିଆ ହାତ ତଳେ ପକାଇ ଘୋଡ଼ା ହେଲା]

ମନୁ—ଚାଲ ।

ହରିଆ—ଇମିତ ଚାଲବ, ମୁଁ କ'ଣ ଘୋଡ଼ା ହେଇଚି ?

[ହରିଆ ଘୋଡ଼ା ହୋଇ ଚାଲିଲା । ମନୁ ଗୋଟେ ଗ୍ଲେଟବାଡ଼ ଧରି ତା' ଉପରେ ବସିଗଲା ।]



ହରିଆ—ଏ କ'ଣ, ଏ କ'ଣ ବାବୁ ! ମେତେ ଘୋଡ଼ା ସମଝିଲ ନା କ'ଣ ?

[ମନୁ ଟୋପିଟା ହରିଆ ମୁହଁରେ ପକାଇ ଟୋପିର ଫିତାଟାକୁ ଲଗାମ ଭଳି ଧଇଲା ଓ ହରିଆକୁ ବାଡ଼ିରେ ମାରିଲା ।]

ହରିଆ—ଓଃ, ମରିଯିବ ବାବୁ, ମରିଯିବ । କେତେ ହେଁ ମାରୁଚ !"

ମନୁ—ଚାଲ୍, ଜଲଦି ଚାଲ । ନଇଲେ କୋରଡ଼ା ମାଡ଼ ବସିବ ।

[ହରିଆ ଘୋଡ଼ାପରି ଘୋଡ଼ମେଇ ଘୋଡ଼ମେଇ ଚାଲିଲା । ମନୁ ତା' ଉପରେ ବସି ମଜାରେ ଗୀତ ଗାଇଲା ।]

ଚାଲ, ଚାଲ ଘୋଡ଼ା ମୋର କେଶର, କାନ ଫୁଲାଇ
ଜଲଦି ଜଲଦି ଆଉରି ଜଲଦି ତୋର ଲମ୍ବା ବେକ ହଲାଇ ।
ହଁ, ହଁ, ସେମିତ ସେମିତ ଜଲଦି, ଜଲଦି······
ଘୋଡ଼ା ଚାଲେ ଟପ୍ ଟପ୍ , ଟାପୁ ଶୁଭେ ଖଟ୍ ଖଟ୍ ॥

[ଏହି ସମୟରେ ରଙ୍ଗମଞ୍ଚ ଅନ୍ଧକାର ହୋଇଗଲା । ଜାଲ ପରଦାର ଉହାଡ଼ରେ କେତୋଟି ପିଲା ଘୋଡ଼ାର ଖୋଳ ଭିତରେ ପଶି ଠିକ୍ ଘୋଡ଼ାପରି ପାହୁଲ ପକାଇ ଚାଲିଛନ୍ତି । ମନୁ ଗୀତ ବୋଲୁଥାଏ ।]

ଏ କ'ଣ ହେଲା, ଏ କ'ଣ ହେଲା ?

[ଦେଖାଗଲା କେତୋଟି ପିଲା ବରଗଛ ମୂଳରେ ଘୋଡ଼ା ଆଗରେ ଠିଆ ହେଲେ]

ଆଗରେ ଏକ ବୁଢ଼ାବର
ମୋଟା ମୋଟା ଓହଳ ତା'ର...
ଅଟକି ଗଲା ଘୋଡ଼ା ମୋର ।
ହେଲେ ସେଟା ବଡ଼ ବୁଦ୍ଧିଆ,
ବାଟକାଟି ଦେଇ ହେଲା ଆଗୁଆ ॥
ବାଃ ରେ ବାଃ, ବାଃ ରେ ବାଃ

[ବରଗଛକୁ ଆଡ଼େଇ ଘୋଡ଼ା ଚାଲିଗଲେ । ମଞ୍ଚ ପୂର୍ବ ଅବସ୍ଥାକୁ ଚାଲି ଆସିଲା ।]

ମନୁ—ହୁଁ, ଚାଲ୍ ଚାଲ୍ ଜଲ୍ଦି ଘୋଡ଼ା, ନଇଲେ ବାଜିବ ଟାଣ କୋରଡ଼ା ।

ହରିଆ—ଏଁ, କୋରଡ଼ା ବାଜିବ ! ନାଇଁ ମୁଁ ଚାଲୁଚି ଚାଲୁଚି । (ହରିଆ ତା ମୁହଁରୁ ଟୋପିଟା ଖସେଇ ଦେଇ) ଏଟା କାଇଁ ମୋ ମୁହଁରେ ଦେଇଚ, ମୁଁ ଦେଖି ପାରୁନି ।

ମନୁ—ଘୋଡ଼ାଙ୍କୁ ଦେଖିନୁ, ତାଙ୍କ ମୁହଁରେ କେମିତି ଚମଡ଼ା ପଟି ବନ୍ଧା ହୋଇଥାଏ ।

ହରିଆ—ମୁଁ କ'ଣ ସତ ଘୋଡ଼ା ହେଇଚି ଯେ......

ମନୁ—ସତ ଘୋଡ଼ା ନୁହଁ, ଆଉ କ'ଣ ମିଛ । ଘୋଡ଼ା ଦୌଡ଼ିଲା ବେଳେ ଯେମିତି ଶବ୍ଦ କରେ, ସେମିତି ପାଟି କର ।

ହରିଆ—ମୁଁ ପରା ମଣିଷଟାଏ । ମେତେ କେମିତି ଘୋଡ଼ା ଶବ୍ଦ କରି ଆସିବ !

ମନୁ—କଣବୁଝ ! ଦେଖିବୁ ଏଇଲେ ? [ମନୁ ଚାବୁକ ଉଞ୍ଚେଇଲା]

ହରିଆ—ନାହିଁ ବାବୁ, ଘୋଡ଼ା ଶବ୍ଦ କରୁଛି । ଓଃ ଏ ଘୋଡ଼ା ଜୀବନରୁ ରକ୍ଷାକର ପ୍ରଭୁ ! [ହରିଆ ଘୋଡ଼ା ପରି ଶବ୍ଦ କଲା ।]

ମନୁ—ଚାଲ୍ ଜଲ୍ଦି ଚାଲ୍ ।

[ହରିଆ ଘୋଡ଼ା ପରି ଶବ୍ଦ କରି ମୁଣ୍ଡ ହଲେଇ ଘୋଡ଼ମେଇ ଚାଲିଲା । ମନୁ ତା' ପିଠିରେ ବସି ଚାବୁକ୍ ମାରୁଥାଏ । ଘୋଡ଼ମେଇ ହରିଆ ବେଳେ ବେଳେ ଥକପଡ଼ିବାରୁ ମନୁ ତାକୁ ଚାବୁକ୍ ଉଞ୍ଚେଇ ଚାଲିବାକୁ ଧମକ୍ ଦେଉଥାଏ । ଏହି ସମୟରେ ଫୋନ୍ ବାଜି ଉଠିଲା । ମନୁ ଓହ୍ଲେଇଯାଇ ଫୋନ୍ ଧରିଲା । ହରିଆ ଫୋନ୍ ଯୋଗେ ରକ୍ଷା ପାଇଯିବାରୁ ଫୋନ୍‌କୁ ମୁଣ୍ଡିଆ ମାରିଲା ।]

ହରିଆ—ହେ ଟେଲିଫୋଁ ମହାପ୍ରଭୁ, ମୋତେ ରକ୍ଷା କରିଦେଲ !

ମନୁ—(ବାପାଙ୍କ ସ୍ୱର ଅନୁକରଣ କରି) ହଲୋ, ହଁ ମୁଁ ଓକିଲବାବୁ କହୁଛି । କ'ଣ ପରାମର୍ଶ ? ହଉ ଆସନ୍ତୁ । ଆସନ୍ତୁ କେତେବେଳକୁ । ୯ଟାକୁ ? ନାଇଁ-ନାଇଁ ତା' ଆଗରୁ ଆସନ୍ତୁ । କିଛି ଚିନ୍ତା ନାଇଁ । ଆସନ୍ତୁ । ଏଁ, ଫିସ୍ ? ଫିସ୍ ଫିସ୍ ଦରକାର ନାହିଁ । ହଁ, ଗୋଟେ ଫୁଟ୍‌ବଲ୍ ଆଣିବ । ପେଣ୍ଡୁ, ପେଣ୍ଡୁ, ଯାହାକୁ ଗୋଡ଼ରେ ମାରି ଖେଳନ୍ତି, ସେଥିରୁ ଗୋଟେ ବଡ଼କରି ଆଣିବ । ଆଉ ? ଆଉ ସେମିତି କିଛି ଦରକାର ନାହିଁ । ଗୋଟେ କ୍ରିକେଟ୍ ବଲ ଆଉ ବ୍ୟାଟ୍, ଗୋଟେ ବ୍ୟାଡ଼ମିଣ୍ଟନ୍ ସେଟ୍, ଗୋଟେ ହକି ଷ୍ଟିକ୍ ଆଉ ବଲ୍, ଆଉ ଖେଳ ଜିନିଷ ଯାହା ପାଇବ ଆଣିବ । ତା'ପରେ କିଛି ଚକୋଲେଟ୍, କିଛି ବିସ୍କୁଟ୍ । ହଁ ହଁ, ମୁଁ ଅପେକ୍ଷା କରିଥିବ ।

[ମନୁ ଫୋନ୍ ରଖିଦେଲା ।]

ହରିଆ—କ'ଣ ଇମିତି ଫୋନ୍‌ରେ କହିଲ, ଗ୍ରେଟ-ବଡ଼ବାବୁ ?

ମନୁ—ପୁଣି ଗ୍ରେଟ ? ହ, ଘୋଡ଼ା ହ ।

ହରିଆ—ପୁଣି ଘୋଡ଼ା ହେବ ? ମୋ ପିଠି ଦରଜ ହୋଇଗଲାଣି ବାବୁ !

ମନୁ—ହଉଚୁ ଘୋଡ଼ା ନା, ଇଲେ ଦେଖିବୁ !

ଖବରକାଗଜ ବକାଳୀ—(ଦୂରରୁ) ସମାଚ୍ଚର, ସାପ୍ତାହିକ ସମାଚ୍ଚର । ପୃଥିବୀକୁ ମହାଯୁଦ୍ଧ ମାଡ଼ିଆସିଲ । ସୈନ୍ୟସଜ୍ଜା, ଅସ୍ତ୍ର ଝଙ୍କାରରେ ଚ୍ଚରିଆଡ଼ ଦୁଲୁକୁଚ ।

ମନୁ—ଓଃ, ଲୋକଟା କ ପାଟି କରୁଚ । ଖାଲି ସବୁବେଳେ ଯୁଦ୍ଧ, ଗୋଲମାଲ, ଏଗୁଡ଼ାଙ୍କୁ ଆଉ ଭଲ ଖବର କଣ୍ଠୁ ମିଳେନ ।

ହରିଆ—ଯୁଦ୍ଧ ତ ଚ୍ଚରିଆଡ଼େ ଲଗିଚ । ସବୁ ଗାଁରେ, ସବୁ ଘରେ । ବାବୁ, ଖଣ୍ଡେ ଖବରକାଗଜ କଣନ୍ତନ ! ତେମେ ପଢ଼ନ୍ତ, ମୁଁ ଶୁଣନ୍ତ । ଯଦ ଆମ ଗାଁ ଖବର ବାହାରଥିବ !

ମନୁ—ଖବରକାଗଜବାଲ ଦୌଡ଼ୁଥିଲେ ତୋ' ଗାଁ ଖବର ଛାପିବାକୁ । ତାଙ୍କର ତ ଏଠି ଯୁଦ୍ଧ ଲଗିଲ, ସେଠି ଧର୍ମଘଟ, ଏ ଯା କହଲେ, ସେ ତା' କଲେ । ଏଇକଥା ଛାପିବାକୁ ତାଙ୍କ ଖବରକାଗଜରେ ଜାଗା ନାହିଁ !

ହରିଆ—ନାଇଁ ବାବୁ, ଯଦ ଆମ ଗାଁ ଖବର ବାହାରଥିବ !

ମନୁ—ହଉ, କହୁଚ୍ଛୁ ଯଦ ଖଣ୍ଡେ ଆଣ୍ । ଆଉ ତା' ପାଖରେ ଯଦ ଭଲ ଛବଥିବା କାଗଜ ଥିବ, ସେଥିରୁ ଦ' ଚ୍ଚରଖଣ୍ଡ ଆଣିବୁ ।

ହରିଆ—ସେ ଛବଗୁଡ଼ କ'ଣ ହବ ?

ମନୁ—ଖବରକାଗଜରେ ବଡ଼ିଆ ବଡ଼ିଆ ଛବ ବାହାରେ ନା । (ଅଭନୟ କର) କାହା ଗୋଡ଼ ଇମିତ, କାହା ହାତ ଇମିତ—ସେଥିରୁ ଦ' ତନଟା ଏ ଘରେ ଟାଙ୍ଗି ଦେଲେ...

ହରିଆ—ଭର ସୁନ୍ଦର ଦଶିବ ! ତୁମର ଯୁଁ କଥା ନା ଗ୍ରେଟ-ବଡ଼ବାବୁ ! ସେ ଛବଗୁଡ଼ା ଏଠି ଟଙ୍ଗା ହବ ! ବଡ଼ବାବୁ ଦେଖିଲେ...

ମନୁ—ପୁଣି ବଡ଼ବାବୁ !

ହରିଆ—ନାଇଁ, ଯାଉଚ, ଯାଉଚ ।

[ହରିଆ ଚ୍ଚଲଗଲ । ମନୁ ଘରେ ଟଙ୍ଗା ହୋଇଥିବା ବନ୍ଦେଇ ଚଣ ସବୁ କାଢ଼ିଲ ।]

ମନୁ—(ସ୍ୱଗତ) ଏଗୁଡ଼ା କ'ଣ ଘରକୁ ସୁନ୍ଦର ଦିଶୁଚି ! ବାପାଙ୍କର ସୁଁ ବୁଦ୍ଧି ନା !

[ପ୍ରବେଶ କଲା ମୁସଲମାନ କୁଣ୍ଢେଇବାଲା । ପିନ୍ଧିଛି ଲୁଙ୍ଗି, ଦେହରେ ଫତେଇ, ମୁହଁରେ ନଶ-ଦାଡ଼ି ।]

କୁଣ୍ଢେଇବାଲା—ଖେଲେନା ରଖିବ ବାବୁ ! କେତନା ରଙ୍ଗର କେତନା ଢଙ୍ଗର କ୍ୟା କ୍ୟା ବଢ଼ିଆ ଖେଲୋନା ବାବୁ ! ଏଇ ଦେଖୋ ପକ୍ଷୀରାଜ ଘୋଡ଼ା । ଏଇ ଦେଖୋ ଆଫ୍ରିକା ବାଘ, ହାଉଁ ହାଉଁ ! ଦେଖୁଚ ବାବୁ କେଷା ହେଇଚ । ଆଉର୍ ଏଠା କଲାମୁହାଁ ହନୁ, ଖେଁ ଖେଁ । ବଡ଼ ବଦମାସ୍ ଏ ଲଙ୍କାପୋଡ଼ା ବାନ୍ଦର !

ମନୁ—(କୁଣ୍ଢେଇଗୁଡ଼ିଏ ଧରି) ସ୍ୱା ଦାମ୍ କେତେ ?

କୁଣ୍ଢେଇବାଲା—(ହିସାବ କରି) ଦଶ୍ ରୁପିୟା ବାବୁ !



ମନୁ—ରୁପିଆ କ'ଣ ରେ ?

କୁ: ବାଲା—ଦଶ୍ ଠାକା ବାବୁ ।

ମନୁ—ଆଉ ଏ ସବୁତକ ?

କୁ: ବାଲା—(ହିସାବ କରି) ପଚ୍ଚିଶ୍ ରୁପିଆ ।

ମନୁ—ଆଚ୍ଛା ଦଅ । ମୁଁ ବୋଉ ଆସିଲେ ଟଙ୍କା ଦେଇଦେବି ।

କୁ: ବାଲା—ବୋଉ ?

ମନୁ—ମୋ ମା ।

କୁ: ବାଲା—ମା' କବ୍ ଆସିବେ ?

ମନୁ—ଘଣ୍ଟାକ ପରେ ।

କୁ: ବାଲା— ଆଚ୍ଛା ଲେ । ମେ ପିଛେ ଆସି ରୁପିଆ ଲେଇଯିବ ।

ମନୁ—ତୁମ ପାଖରେ ଆଉ କୁଣ୍ଢେଇ ନାହିଁ ?

କୁ: ବାଲା—ଆଉ ଥା ଯେ ବାବୁ ବକ୍ରୀ ହୋଗିୟା । ଲେକିନ୍ ମୋ ଘରେ
ଅଛି ବାବୁ !

ମନୁ—ଘରେ ଯଦି ଅଛି, ଯାଅ ନିନ ଆସିବ ।

କୁ: ବାଲା—ଆଉ ଖେଲୋନା ତୁମେ ନବ ଛୋଟବାବୁ !

ମନୁ—ବାବୁ ତ କହିବ, ଛୋଟବାବୁ କ'ଣ ?

କୁ: ବାଲା—ହାଁ ବାବୁ, ତୁମେ ଆଉ ଖେଲୋନା ନବ ?

ମନୁ—ତୁମେ ଯେତେ ଆଣିବ, ସେତେ ନେବି ।

କୁ: ବାଲା—ମୁଁ ଅବ ଲେଇ ଆସିବ ବାବୁ । ମେରା କସ୍‌ମତ୍ ବଡ଼ା
ତାଜା । ଏତେନା ଖେଲୋନା ବକ୍ରି ହୋଗା !

[କୁଣ୍ଢେଇବାଲା ଆନନ୍ଦରେ ଗ୍ଲଲଗଲା ।]

ମନୁ—(ବାଘ କଣ୍ଢେଇକୁ ଦେଖି) ହାଉଁ ହାଉଁ······
(ମାଙ୍କଡ଼କୁ ଦେଖି) ଖାଁ ଖାଁ···

[ମନୁ ଏପରି ଖେଳ ଖେଳ ହସି ଉଠିଲା । ପରେ
ପରେ ହରଆ 'ଖଣ୍ଡେ ଖବରକାଗଜ ଓ କେତେଟା ଛବି
ଆଣି ଆସି ପହଞ୍ଚିଲା ।]

ହରିଆ—ତୁମେ ଛୋଟ···ବଡ଼ବାବୁ ଏତେ କୁଣ୍ଢେଇ ତା'ଠାରୁ ରଖିଲ !
ପଇସା ଦେଇଚ ?

ମନୁ—ପଇସା ଦଆ ହବନ ' ତୋ'ର ସେଥିରେ କ'ଣ ଅଛି । ତୁ ଛବି
ଆଣିଲୁ ?

ହରିଆ—ଆଣିଚ ବାବୁ ! ତା ପାଖରେ ଯେତେ ଥିଲା ସବୁ ନେଇ ଆସିଲି ।

[ହରିଆ କେତୋଟା ଖବରକାଗଜ ଓ ପତ୍ରପତ୍ରିକା ମନୁକୁ ଦେଲା । ମନୁ ସେସବୁ ଦେଖିବାରେ ଲାଗିଲା ।]

ମନୁ—ଭଲ କଲୁ । ବାଃ, ବଢ଼ିଆ ଚିତ୍ର ତ ହୋଇଛି ।

ହରିଆ—ହେଲେ ପଇସା ବାକି ଅଛି ।

ମନୁ—ଥାଉ, ବୋଉ ଆସିଲେ ଦବନି !

[ମନୁ ବ୍ୟଙ୍ଗ ଚିତ୍ରସବୁ ଚିରିବାରେ ଲାଗିଲା ।]

ହରିଆ—ସେଗୁଡ଼ା ଚିରି ପକଉଚ କାହିଁକି ? ପଇସା ପରା ଦିଆ ହୋଇନି !

ମନୁ—ହଁ !                [ମନୁ ଚିତ୍ର ଚିରିବାରେ ଲାଗିଥାଏ ।]

ହରିଆ—ପଇସା ଦିଆ ହୋଇନି ପରା !

ମନୁ—ହେଇ ଦବାନି !

ହରିଆ—ଏତେଗୁଡ଼ା ପଇସା !

ମନୁ—ହଉ ।

ହରିଆ—ପଇସା କିଏ ଦବ ?

ମନୁ—ତୁ ।

ହରିଆ—ମୁଁ ?

ମନୁ—ତୁ ବୋଉଠୁଁ ଆଣିଦବୁ ।

ହରିଆ—କେଜାଣି, ମୋତେ ତ ବିଶ୍ୱାସ ଲାଗୁନି । ମା' କଣ ଏତେ ପଇସା ଦେବେ !

ମନୁ—ତତେ ତ କିଛି ବିଶ୍ୱାସ ଲାଗେନି !

ହରିଆ—ପଇସା ନ ଦେଲେ ମତେ ସେ କାଗଜବାଲା ବେଇଜତ୍ କରିବ ଯେ ।

ମନୁ—ନାଇଁ ବା, ବେଇଜତ୍ କାଇଁ କରିବ !

[ମନୁ ଅଠାଶିଶି ଓ କାର୍ଟୁନ୍ ଚିତ୍ର ସବୁ ନେଇ ଟେବୁଲରେ ଠିଆ ହୋଇ କାନ୍ଥରେ ମାଇଲା । ହରିଆ ବିବ୍ରତ ହୋଇ ପଡ଼ିଲା ।]

ହରିଆ—ସ୍ଲେଟବାବୁ ନା ବଡ଼ବାବୁ ଏସବୁ କ'ଣ ହଉଚି ? ବଡ଼ବାବୁ ଆସିଲେ······

ମନୁ—ପୁଣି ! ଲଗା ଏ ଚଡ଼ଏବୁ କାନ୍ଥରେ । ଲଗଉଚୁ ନା ।

[ମନୁ ଫୁଟବଲ ଖେଳିବାକୁ ଯୋଗାଡ଼ କଲା । ହରିଆ ମୁହଁ ଫାଉଁ ଫାଉଁ କରି କାନ୍ଥରେ ଚଡ଼ ମାରିଲା ।]

ହରିଆ—ଏଠି ତମେ ବଲ୍ ଖେଳିବ ବାବୁ ?

ମନୁ—କାହିଁ, ଏଠି କ'ଣ ଅସୁବିଧା ହଉଚି ?

ହରିଆ—ତମେ ପଡ଼ କାଗଜ ପଢ଼ିବ !

ମନୁ—ପରେ ।

ହରିଆ—ମୁଁ ପଡ଼ ଟିକଏ ଗାଁ ଖବର ଶୁଣିଥାନ୍ତି !

ମନୁ—ଆଚ୍ଛା ଆଣ । [ହରିଆ ମନୁକୁ ଖବରକାଗଜ ଦେଲା ।]

ମନୁ—(ଖବରକାଗଜ ଆଡ଼କୁ ଚାହିଁ) ମଧୁବନରେ ବିରାଟ ସଭା ।

ହରିଆ—କି ସଭା ?

ମନୁ—ବିରାଟ ସଭା । ମାହାଙ୍ଗା ଥାନାରେ ଗୁଳିଚାଳନ ଅଭାବ ।

ହରିଆ—ଗୁଡ଼ର ଅଭାବ, ଲୋକେ ଚକୁଚନ୍ତି କମିତି ?

ମନୁ—'ତୋ'ର ସେଥିରେ କ'ଣ ଅଛି ? ତୁ ତ ଏଠି ବକତ ପକଉଚୁ ।

ହରିଆ—ହେଲେ ବାବୁ, ଲୋକଗୁଡ଼ାକ କଷ୍ଟ ପାଉଥିବେ !

ମନୁ—ଜଗତସିଂହପୁରରେ ଘରପୋଡ଼ି ।

ହରିଆ—ଘରପୋଡ଼ି ଆମ ଗାଁରେ କିଛି ହେଇନି ତ ?

ମନୁ—ଏ ତ କଟକ ଜିଲ୍ଲା ଖବର । ତୋ ଘର ତ ପୁରୀ ଜିଲ୍ଲା । ତୋ ଗାଁ ନାଁ କ'ଣ ?

ହରିଆ—ମୋ ଗାଁ ନାଁ ଭଲପଡ଼ା, ପ୍ରଗନେ କୋଠଦେଶ, କଲେ......

ମନୁ—(ଖବରକାଗଜ ଦେଖି) ନାଁ, ତୋ ଗାଁ ଖବର କିଛି ନାହିଁ ତ ।

ହରିଆ—କିଛି ନାହିଁ ! ତମେ ଟିକେ ଭଲକରି ଦେଖ । କାରେ ଆମ ଗାଁ ଖବର କୁଠି......(ମଟର ହର୍ଣ୍ଣ ଶୁଭିଲା) ବାବୁ ମା' ଆସିଗଲେ ନା କ'ଣ !

ମନୁ—(ବାହାରକୁ ଚାହିଁ) ନାହିଁବା, ଏ ଆମ କାର ନୁହଁ । ସିନେମା ୩ ଘଣ୍ଟା ହବଟି !

ହରିଆ—ହେଲେ ବାବୁ, ତମେ ତମ ଜନଷପଡ ଭିତରକୁ ନେଇଯାଅ । ମୁଁ ଘର ସଜାଡ଼ି ଦିଏ । ଏଗୁଡ଼ା ସବୁ ଘରଯାକ ପଡ଼ିଛି । ବାବୁ ଦେଖିଲେ······

ମନୁ—ଦେଖନ୍ତୁ, ସେ ସିନେମା ଗଲେ ମତେ ନେଲେନି କାହିଁକି ! (କୁଣ୍ଢେଇକି ଦେଖାଇ) ଦେଖୁଛୁ ହରିଆ, କମିତିକା ବୁଢ଼ା, କମିତି ତାର ଥନ୍ତଲ ପେଟ ।

ବୁଢ଼ା ଗୁଲେ ଡପ୍ ଡପ୍
ବୁଢ଼ୀ ଗୁଲେ ଖପ୍ ଖପ୍

ବାଃରେ ବାଃ, ବାଃରେ ବାଃ······

[ଏଇ ସମୟରେ ରଙ୍ଗମଞ୍ଚ ଅନ୍ଧାର ହେଲା । ଜାଲି ପରଦାର ଉଡ଼ାଳରେ ଦେଖାଗଲା ଦୁଇଟି ପିଲା ବୁଢ଼ା ବୁଢ଼ୀ ଖୋଳ ପିନ୍ଧି ନାଚି ନାଚି ଗ୍ଲିଗଲେ । ଦୃଶ୍ୟ ପୂର୍ବାବସ୍ଥାକୁ ଫେରି ଆସିଲା ।]

କମିତି ବଢ଼ିଆ ହରିଆ !

ହରିଆ—ସବୁ ତ ବଢ଼ିଆ । ହେଲେ, ବଡ଼ବାବୁ ଆସିଲେ······

ମନୁ—ପୁଣି ବଡ଼ବାବୁ ବଡ଼ବାବୁ ହେଲୁ !

ହରିଆ—ଖାଲି ଧମକଉଚ । ଏ କାନ୍ଥ କ'ଣ ହେଇଛୁ ? ଏଗୁଡ଼ା କ ଗନ୍ଧିଆ ଛବି !

ମନୁ—ଗନ୍ଧିଆ ! ଦେଖୁନୁ କମିତି ସୁନ୍ଦର ହେଇଚି ।

[ଚେନାଚୁରବାଲାର ପାଟି ଶୁଣାଗଲା ।]

ଚେନାଚୁରବାଲା—(ଅନ୍ତରାଳରୁ) ଚେନାଚୁର ଗରମ୍ ବାବୁ, ବଡ଼ ମଜେଦାର ଚେନାଚୁର ଗରମ୍ । ଚେନାଚୁର୍ ମୁର୍‌ର୍······

ଅସଲ ଚନା, ଘୁମୁନି ଦାନା, ମାଲଚନ୍ଦ ପରେ ଉଡ଼ୁଚି ବାନା
ଫେରିଗଲେ ଥରେ ଆଉ ମିଳେନା
ପାଖେ ଥିଲେ ଆଉ ନାହିଁ ଭାବନା

ଚେନାଚୁର୍ ଗରମ୍ ·····

ମନୁ—(ଓଠରୁଣ୍ଟି) ହେ ହରିଆ, ସେ ଚେନାଚୁର୍ ବାଲାକୁ ଡାକ । ବୋଉ ଘରେ ନାହିଁ । ଦି'ଟା ଚେନାଚୁର୍ ଭଲକରି ଖାଇବା ।

ହରିଆ—ଚେନାଚୁର୍ ଖାଇଲେ ତମ ପେଟ ଖରାପ ହବ ।

ମନୁ—ନାଇଁବେ, ପେଟ କାଇଁ ଖରାପ ହବ ! ଯା ଡାକ୍ । ସବୁବେଳେ କେକ୍ ବିସ୍କୁଟ୍ ଖାଇ ଖାଇ, ଦୁଧ ପିଇ ପିଇ ଚଟା ଲାଗିଲାଣି । ତୁ ଯାହା କହ ହରିଆ, ବଡ଼ ବଢ଼ିଆ ଏ ଚେନାଚୁର୍ ଜନଷଟା ଏକା !

ହରିଆ—ସେକଥା କଇବାକୁ ଅଛି ? ଏକାବେଳେକେ ଝାଡ଼ା-ବାନ୍ତି, କାଛୁ-କୁଣ୍ଡିଆ, ସବୁକୁ ଡାକ ଆଣିବ ।

ମନୁ—ସେ ବାଜେକଥା ଛାଡ଼ । ଯା, ଚେନାଚୁର ଆଣ ।

ହରିଆ—କେତେକର ଆଣିବ ?

ମନୁ—ଚାରି ଟଙ୍କାର ।

ହରିଆ—ଏଁ, ଏକଦମ୍ ଚାରି ଟଙ୍କାର ? ବଡ଼ବାବୁ ଜାଣିଲେ···

ମନୁ—ପୁଣି ବଡ଼ବାବୁ ! ଯାହା କହୁଚ, ସେଇଆ କର ।

ହରିଆ—ସେ ତ ଏତେ ଟଙ୍କାର ବାକ ଦବନ ।

ମନୁ—ଦବନ ! ତେବେ (ପକେଟ ହରାଣ୍ଡି) ମୋଠି ପଇସା ଅଛି ।

[ମନୁ ପକେଟରୁ ପଇସା କାଢ଼ି ଦେଲା ।]

ହରିଆ—(ପଇସା ଗଣି) ମୋଟେ ଛ' ପଇସା । ଏତକରେ ଆଣିବ ?

ମନୁ—କହିଲି ପରା ଚାରି ଟଙ୍କାର ।

ହରିଆ—ଆଉ ପଇସା ?

ମନୁ—ବୋଉ ଅଇଲେ ଦବୁ ।

ହରିଆ—ମା ଜମା ଦେବେନ । ଏତେ ଚେନାଚୂର···

ମନୁ—ତୁ ବାକ ଆଣେ, ମୁଁ ତ ବୋଉଠଁ ଟଙ୍କା ଆଣିଦେଲେ ଗଲା ।

ହରିଆ—ନାଇଁ ମେତେ ସେ ଅଡ଼ୁଆରେ ପକାନ !

ମନୁ—ପୁଣି ଗୋଳମାଳ କଲୁ ? ଇଲେ କାନ୍ଦବ ଯଦ, ଊଁ-ଊଁ···

ହରିଆ—ନାଇଁ ବାବୁ କାନ୍ଦନା । ମୁଁ ଯାଉଚ । (ଯାଉ ଯାଉ) ସବୁ ବକାରପାକ ଆଜ ଏପଟେ ଆଇଚନ । ବାବୁ-ମା ନ ଥିବାଲୁ··· ମଣିଷ ବଡ଼ ଅଡ଼ୁଆରେ ପଡ଼ଲା !

ହରିଆ—(ବାହାରକୁ ଚାହିଁ) ହେ ଚେନାଚୂରବାଲା ।

[ଚେନାଚୂରବାଲା ଗୀତ ବୋଲି ବୋଲି ପ୍ରବେଶ କଲା ।]

ଚେ:ବାଲା—ଅସଲଚେନା······ଘୁଘୁନିଦାନା······ଚୁନାଚୁରଗରମ । କେତେକର ନବ ବାବୁ !



ହରିଆ—ଏ ଦଶ ପଇସାର ।

ମନୁ—ହରିଆ !

ହରିଆ—ନା, ଚୁରିଟଙ୍କାର ।

ଚେ:ବାଲା—ଏତେ ଟଙ୍କାର କ'ଣ କରିବ ?

ହରିଆ—ତୁ ଦେ ନା, ତୋର ମେଥିରେ କ'ଣ ଅଛି ?

ଚେ:ବାଲା—ନା, ମୁଁ ପଚାରିଲି ଛୋଟବାବୁ କ'ଣ ସତରେ ଏତେ ଚେନା-ଚୂର କିଣିବେ !

ମନୁ—ନାଇଁ, ମିଛରେ କିଣିବେ ।

ହରିଆ—ଛୋଟବାବୁ ନୁହନ୍ତି, ବଡ଼ବାବୁ ।

ଚେ:ବାଲା—ବଡ଼ବାବୁଙ୍କର ଚେନାଚୂର ଦରକାର ! କ'ଣ ଚା' ମଉଜ-ଫଉଜ କରିବେ କି ? ହେଲେ ମୋ ପାଖରେ ତ ଏତେ ନାହିଁ । ଏଇ ୧୬ଟା ପୁଡ଼ିଆ ନିଅ, ମୁଁ ଆଉ ଆଣି ଦଉଚି ।

[ମନୁ ଚେନାଚୂର ପୁଡ଼ିଆ ନେଲା ।]

ଚେ:ବାଲା—ପଇସାଟା !

ହରିଆ—ପଇସା କ'ଣ ଚୋର ବୁଡ଼ଯାଉଛ ? ଯା, ଆଜ ଚେନାଚୁର ନେଇଆ ।

ଚେ:ବାଲା—ନାଇଁ ବୁଡ଼ିଯିବ କାଇଁକି ? ବଡ଼ବାବୁ ଯେତେବେଳେ କହୁଚନ୍ତି ! [ଚେନାଚୁରବାଲା ଗ୍ଲଲଗଲା ।]

ମନୁ—(ଚେନାଚୁର ପାଟିରେ ପକେଇ) ବାଃ ବଡ଼ ବଢ଼ିଆ କରିଚ ତ ।
କୋଳବାଲାକୁ କହୁଥିଲି, ସେ ଆସି ଯା'ନ୍ତା କି ! କୋଳ-ଚେନାଚୁର ବଢ଼ିଆ ଲାଗ ହ'ନ୍ତା । ନେ ହରିଆ, ତୁ ହ'ଟା ପାଟିରେ ପକା ।

ହରିଆ—ନା, ସେଗୁଡ଼ା ଖାଲି ବାଲି, ଗୋଡ଼ ।

ମନୁ—ହଁ, ବାଲି ଗୋଡ଼ ଗୋଟେ ଗୋଟେ ଅଛି ଯେ, ହେଲେ ବଡ଼ ବଢ଼ିଆ ମଜା ।

ହରିଆ—ମଜା ! ଆମ ଛକମୁଣ୍ଡରେ ସେ ଗୁଡ଼ଆଣୀ ବୁଢ଼ୀ ଏଗୁଡ଼ା କରୁଛି ଯେ, ଛିଃ ଛିଃ, କି ଅସନା । ତା ହାତ ଗୋଡ଼ ଗୋବର ।
ପୁଣି ସେଥିରେ ନାକ ପୋଛି ହାତ ଧୁଏନା । ପାଟିରୁ ଲାଳ ଗଡ଼ୁଚି ।
କୁଆ କୁକୁଡ଼ାଗୁଡ଼ା ସେ ଭଜା ଉପରେ···

ମନୁ—ହରିଆ, ଦେଖିଚୁ ପରା ମୁଁ ଖାଉଚି !

ହରିଆ—ସେଗୁଡ଼ା ତମେ ଏତେ ଖାଅନା ବାବୁ । ମା ଆଇଲେ ମୋତେ କ'ଣ କହିବେ ?

ମନୁ—କହିବେ କ'ଣ, କହୁଯାଇଚନ୍ତି ପରା !

ହରିଆ—ମା କ'ଣ କହିଚନ୍ତି ଏତେ ଚେନାଚୁର ଖାଇବାକୁ ?

ମନୁ—ମା କହି ନ ଥିଲେ—ହରିଆ, ମନୁ ଯାହା କହିବ, ବୁଝିବୁ । ତାକୁ ଚଡ଼େଇବୁନି କି କନ୍ଦେଇବୁନି ।

ହରିଆ—କାଇଁ, ମୁଁ କ'ଣ ତାଙ୍କ କଥା ଅମାଇନ କଲି କି ?

ମନୁ—ତୁ ତ କାଇଁ ମୋ' କଥା ଜମା ବୁଝୁନୁ ।

ହରିଆ—ସବୁ ତ ବୁଝୁଚି ସ୍ତ୍ରୋଟବାବୁ ।

ମନୁ—ପୁଣି !

ହରିଆ—ନାଇଁ, ବଡ଼ବାବୁ ।

ମନୁ—କିଛି ବୁଝୁନୁ । ଗୋଟେ କଥା କହିଲେ ଖାଲି ଗୋଳମାଳ କରୁଚୁ । ରହ ବୋଉ ଆସୁ, ମୁଁ ତ ଖାଲି କାନ୍ଦିବି । ଉଁ-ଉଁ-ଉଁ···

ହରିଆ—ଆଉ ବାବୁ, ସେମିତି ହୁଅନା । ତୁମକୁ କାନ୍ଦିବାର ଦେଖିଲେ ମା ଆଉ ମତେ ଘରେ ରଖିବେ ?

ମନୁ—ନ ରଖନ୍ତୁ, ମୁଁ କ'ଣ କରିବି ? ତୁ ତ ମୋ କଥା ମାନୁନୁ ।

ହରିଆ—ନାଇଁ ମାନିବି, ନିଚେ ମାନିବି ।

ମନୁ—ମାନିବୁ ?

ହରିଆ—ଆଜ୍ଞା !

ମନୁ—ଆଚ୍ଛା । ଆଗ ନେ ଚେନାଚୁର ଦି'ଟା ପାଟିରେ ପକା ।

ହରିଆ—ନାଇଁ ବାବୁ ! ମୁଁ ବେଦାନ୍ତୀ ଲୋକ । ସେଗୁଡ଼ା ଚୋବେଇଲେ···

ମନୁ—ପୁଣି ଗୋଳମାଳ କଲୁ ? ନେ ଖା ।

[ହରିଆ ଚେନାଚୁର ପାଟିରେ ପକେଇଲା ।]

ମନୁ—କ'ଣ ଭଲ ଲାଗୁଚି ?

ହରିଆ—(ମୁହଁ ବିକୃତ କରି) ଭଲ ! ଏଗୁଡ଼ା ପୁଣି ଭଲ ଲାଗିବ ! (ମନୁ ବିରକ୍ତ ପ୍ରକାଶ କଲା) ନାଇଁ ଲାଗୁଚି ଭଲ ଲାଗୁଚି ! କଷା, ପିତା, ରାଗ ଖଟା ସବୁ ଏଥିରେ ଅଛି । ଆଉ ବାଲି ବି କିଛି···

ମନୁ—ଅଛି, ଆଉ ।

ହରିଆ—(ମୁହଁ ବିକୃତ କରି ଚୋବେଇ ଚୋବେଇ) ଏଃ, ଏଥିରେ ଖାଲି ପଥରଗୁଣ୍ଡ ।

ମନୁ—ନାଇଁ ପଥରଗୁଣ୍ଡ ନୁହେଁ, ଚଣା ହୋଇଥିବ ଚଣା ।

ହରିଆ—ନାଇଁମ ବାବୁ ! ପଥରଗୁଣ୍ଡଗୁଡ଼ାକ । ଓହୋ, ଥୁ···ଥୁ···

ମନୁ—କାଇଁ ମୁଁ ତ ଜାଣିପାରୁନ ।

ହରିଆ—ତେମେ କେମିତି ଜାଣିବ ? ତେମେ ତ ଖାଲି ଗିଳି ଦଉଚ ।

ମନୁ—ନାଇଁବା, କିଛି ଖରାପ ନାହିଁ । ବଡ଼ ବଢ଼ିଆ ଲାଗୁଚି । (ଚନାଚୁର ଘାଣ୍ଟି ଦେଖୁ ଦେଖୁ) ଆରେ ଏଟା କ'ଣ ? ସବୁ ନଡ଼ଆପାତି ପଡ଼ିଚି ।

ହରିଆ—(ପରୀକ୍ଷା କରି) ବାବୁ, ଏଟା ମଳ ବଗୁଟେ··· ଦେଖିଲ ବାବୁ, ମୁଁ ସବୁ କହୁଚି ଏ ଚେନାଚୁରଗୁଡ଼ାକ ଭଲ ଜିନିଷ ନୁହେଁ । ଗୋଡ଼, ବଗୁ···

ମନୁ—ବଗୁ ! ଏ ହରିଆ, ବଗୁ ମୋ ପେଟକୁ ଯାଇନି ତ ?

ହରିଆ—ନାଇଁମ, ଗୋଟେ କୁଠି ଥିଲା ନା !

ମନୁ—ଆଜ ଗୋଟେ ଯଦି ପେଟ ଭିତରକୁ ଯାଇଥିବ ?

ହରିଆ—ମଳ ବଗୁ ତ, କିଛି ଭୟ ନାଇଁ ।

ମନୁ—ଯଦି ପୁଣି ପେଟରେ ବଞ୍ଚିବ ?

ହରିଆ—ତମେ ତ ତାକୁ ଦାନ୍ତରେ ଚୋବେଇ ସାଧ କରି ଦେଇଥିବ । ସେ ଆଉ ପେଟ ଭିତରେ ବଞ୍ଚିବ କମିତି ?

ମନୁ—ଅଃ-ଅଃ, ଅଃ-ଉ (ବାନ୍ତି କଲାପରି ମୁହଁ କରି) ହରିଆ ! ବା-ବା ବାନ୍ତି !

ହରିଆ—ବାନ୍ତି କାଇଁ କରିବ ! ମନକୁ ଟାଣ କରିଦଅ ।

ମନୁ—ମୋ ପେଟ ଭିତରେ ବଗୁଟେ ଚାଲୁଚି ହରିଆ !

ହରିଆ—ନାଇଁ, ବଗୁ କୁଆଡ଼ୁ ଆସିବ ? ତମେ ମିଛଟାରେ ଛନିଆ ହଉଚ ବାବୁ !

ମନୁ—ତୁ ସତ କହୁଛୁ ହରିଆ ! ବଗୁ ମୋ ପେଟ ଭିତରକୁ ଯାଇନି ?

ହରିଆ—ନା, ଜମା ଯାଇନି ।

ମନୁ—ମତେ କାଇଁ କେମିତି କେମିତି ଲାଗୁଚି । ଯା, ଏଗୁଡ଼ା ଆଉ ଖାଇବନି । ହରିଆ, ବଗୁ ମୋ ପେଟ ଭିତରେ ଅଛି ରେ ! ହେଇ ଚାଲୁଚି । ହେଇ କାମୁଡ଼ିଲା । ଆଃ ! ଅଃ-ଅଃ···

[ବାନ୍ତି କଲାପରି ହେଲା ।]

ହରିଆ—ନାଇଁମ କିଛି ନାଇଁ । ମିଛରେ କାହିଁ ସିମିତ ଡରୁଚ ?

ମନୁ—କିଛି ନାଇଁ ? ପେଟ ଭିତରେ ଗୁଳୁଚି । ଆଃ, ଆଃ...

[ମନୁ ବାନ୍ତ କଲାପରି ହେଲା । ହରିଆ ତାକୁ ଆଉଁସି ଦେଲା ।]

ହରିଆ—ଓ ହୋ ! ଦେହକୁ ଟିକେ ଟାଣ କରିଦିଅ । ଇଲେ ସବ ମା ଆସିବେ...

[ମନୁ ବାନ୍ତ କଲାପରି ହେଉଥାଏ । ହରିଆ ତାକୁ ଆଉଁସା-ଆଉଁସି କରିବାରେ ଲାଗିଥାଏ । ଏହି ସମୟରେ ମଟର ହର୍ଣ୍ଣ ଶୁଣାଗଲା ।]

ହରିଆ—ଓହୋ, ଟିକିଏ ଭଲ ଥୟ ଧର (ବାହାରକୁ ଚାହିଁ) ମା' ଆଉ ବାବୁ ଆସିଗଲେ ନା କ'ଣ ! ହଁ, ଆସିଗଲେ ତ !

[ହରିଆ ଜିନିଷପତ୍ର ସଜାଡ଼ିବାକୁ ଚେଷ୍ଟା କଲା । ମନୁ ଅ-ଅ-ହେଉଥାଏ ।]

ଓଃ, ଟିକିଏ ଥୟ ଧର । ମୁଁ ସେତେବେଳୁ କହୁଚି ଆସିଯିବେ ବୋଲି !

ମନୁ—ସେ ଏତେ ସଅଳ ଆସିବେ ବୋଲି କିଏ ଜାଣିଥିଲା କି ! ମୁଁ ଭାବିଥିଲି ସେ ଅଇଲାବେଳକୁ ୯ଟା ବାଜିଥିବ । ଅଃ...ଅଃ...

ହରିଆ—(ବାହାରକୁ ଚାହିଁ) ଅଇଲେ ତ ! ହେ ଭଗବାନ ! ମୁଁ କ'ଣ କରିବି ?

[ଘୁଞ୍ଚୁଣୀଟେ ଧରି ହରିଆ ସେ ଘର ଓଲେଇଲା । ମନୁ ଖଣ୍ଡେ ଚଉକି ବନ୍ଧ ଧରି ବସିଲା ।]

ମନୁ—ଦ ଗୋଟ୍, ଗୁଡ଼୍ ମର୍ଣ୍ଣିଂ ମିଷ୍ଟର୍ ଆସ୍ । ହାଓ ଆର୍ ଇଉ ? ଦ ଆସ୍, ଆଇ ଆମ୍ କ୍ୱାଇଟ୍ ଓ୍ୱେଲ । ଅଃ—ଅଃ—

ହରିଆ—ଓଃ, ଥୟ ଧର । ଟିକେ ଦେହ ଟାଣ କରିଦିଅ ।

[ହରିଆ ମନୁକୁ ଆଉଁସିଲା । ମଦରବାବୁ ଓ ତାଙ୍କ ସ୍ତ୍ରୀ ଆସି ପହଞ୍ଚିଲେ ।]

ମଦର—ଏଁ, ଏ କ'ଣ ! ଏ ଘର ଏମିତି କାହିଁକି ହେଲା ! ଏ ଜିନିଷପତ୍ର ଏମିତି କିଏ କଲା !

ମଦରଙ୍କ ସ୍ତ୍ରୀ—ସତେ ତ, ଘରଟାର କ'ଣ ପୂରା ଘଟପରିବର୍ତ୍ତନ ହେଇଚ ।

ମଦର—କି ଆମର ଘଟ ପରିବର୍ତ୍ତନ ହେଇଚ ! କରେ ହରିଆ ! ଏ କ'ଣ ହେଇଚ ? [ହରିଆ ଚୁପ୍‌ଚାପ୍ ରହିଲା]

ମଦରଙ୍କ ସ୍ତ୍ରୀ—ଆଚ୍ଛା, ମନୁ ! [ମନୁ ନୀରବ ରହିଲା ।]

ମନୁ—ଅଃ—ଅଃ—ଇ. ଏ. ଟି.—ଏସ୍ ଇଟ୍‌ସ୍ ମାନେ ଖାଏ । ଦ ଆସ୍ ଇଟ୍‌ସ୍ ଗ୍ରାସ୍ ମାନେ ଗଧ ଘାସ ଖାଏ ।

ମଦର—ମନୁର ତ କ'ଣ ଆଜ ଭାରି ପାଠପଢ଼ାରେ ମନ ! ହେ ମନୁ, ମନୁ ?

[ଚେନାଚୁରବାଲା ପଶିଆସିଲା । ମନୁ ବହି ପଢ଼ୁଥାଏ । ତା' ସଙ୍ଗେ ସଙ୍ଗେ ଅବସ୍ଥାକୁ ଲକ୍ଷ୍ୟ ରଖିଥାଏ । ହରିଆ କନ୍ଧ ଉପରେ ଭିତରକୁ ପଳେଇଗଲା ।]

ଚେ: ବାଲା—ଆଜ୍ଞା ଆଣିଲି ।

ମଦରଙ୍କ ସ୍ତ୍ରୀ—କ'ଣ ଆଣିଲୁ ?

ଚେ: ବାଲା—ଚେନାଚୁର୍ ।

ମଦର—ଚେନାଚୁର୍ !

ଚେ: ବାଲା—ହଁ, ଗୁରୁଠାକୁର ।

ମଦର—ଗୁରୁଠାକୁର ଚେନାଚୁର କିଏ କହିଥିଲା ?

ଚେ: ବାଲା—ଆପଣ କହିଥିଲେ ଆଜ୍ଞା ! ଏଇ ଟିକକ ଆଗରୁ ।

ମଦର—ଟିକକ ଆଗରୁ ମୁଁ କହିଥିଲି ? ମୁଁ ତ ଘରେ ନ ଥିଲି ।

ଚେ: ବାଲା—ଆଜ୍ଞା, ଏତେ ମିଛ କହୁଚନ୍ତି ! ଆପଣ ଘରେ ନ ଥିଲେ ? ଆପଣଙ୍କ ଚାକର ମତେ କହିଲା; ବଡ଼ବାବୁ ବରାଦ କରିଚନ୍ତି ବୋଲି । ଭାବିଲି, କିଛି ମଉଜ ମଜଲିସ ହବ······

ମଦର—ଚେନାଚୁରରେ ମଉଜ ମଜଲିସ ନ କଲେ ଚଳୁଚି ! ହରିଆ, ହେ ହରିଆ !

ଚେ: ବାଲା—ହେଲେ ଆପଣ ଏ ଚେନାଚୁର ଫେରାନ୍ତୁ ନ ! ବଡ଼ ବଢ଼ିଆ ଜିନିଷ ।

ମଦରଙ୍କ ସ୍ତ୍ରୀ—ଏ ଚେନାଚୁର ଆମର ଦରକାର ନାହିଁ । ନେଇଯାଅ । ଏକାବେଳକେ ଗୁଡ଼ ଟଙ୍କାର !

ମଦର—ଏଗୁଡ଼ା ମଣିଷ ଖାଆନ୍ତି ! ଯାବତୀୟ ପେଟ ଗୋଳମାଳର କାରଣ······

ଚେ: ବାଲା—ଏମିତି କ'ଣ କଉଚନ୍ତି ଆଜ୍ଞା ! ଆପଣ ବରାଦ କରିବାରୁ ଗୁଡ଼ିଆଡ଼େ ଯାଇ ବୁଲିବୁଲି ଆଣିଲି ।

ମଦର—ଓଃ, କେଡ଼େ ଉପକାରୀ ବନ୍ଧୁଟେ !

ମଦରଙ୍କ ସ୍ତ୍ରୀ—ଏ କଥା କ'ଣ ? ହରିଆ ଗଲା କୁଆଡ଼େ ?

ମଦର—ଆଜ ବଉଚି ତାକୁ ଏଠୁ ନିକାଲି ।

ମନୁ—ଦ ଗୋଟ୍, ଗୁଡ୍ ମର୍ଣ୍ଣିଂ ମିଷ୍ଟର ଆସ୍ । ହାଓ ଆର୍ ଇଉ ! ଦ ଆସ୍, ଆଇ ଆମ୍ କ୍ୱାଇଟ୍ ବ୍ୟାଡ୍ ।

ମଦର—ହେ, କ'ଣ ଇମିତି ଭୁଲଭାଲ କରି ପଢୁଛୁ ? କ୍ୱାଇଟ୍ ବ୍ୟାଡ୍, ନା କ୍ୱାଇଟ୍ ଓ୍ୱେଲ !

ମନୁ—ଦ ଆସ୍, ଆଇ ଆମ୍ କ୍ୱାଇଟ୍ ଓ୍ୱେଲ । ଦ ଆସ୍ ଆଇ ଆମ୍ କ୍ୱାଇଟ୍ ଓ୍ୱେଲ···

[ କୋଳିବାଲୀ ଆସି ପହଞ୍ଚିଲା । ପିନ୍ଧିଛି ଖଣ୍ଡେ ଅଣଓସାରିଆ ରଙ୍ଗିନ୍ କପଡ଼ା । ଗୋଡ଼ରେ ପାଉଜ । ହାତରେ ରୁପାଖଡ଼ୁ ଓ କାଚ ]



କୋଳବାଲା—(କୋଳ ପସରା ରଖିଦେଇ) ଆସ ବାବୁ କୋଳ ନିଅ । ମୁଁ ଯାଏ, ମୋର ବେଳ ଗଡ଼ିଯାଉଚି ।

ମଦର—କ କୋଳ ! ହରିଆ, ହରିଆ !

ମଦରଙ୍କ ସ୍ତ୍ରୀ—(କୋଳ ଦେଖି) ଏଗୁଡ଼ା କ'ଣ ଲୋ !

କୋଳବାଲୀ—କୋଳି, ବଉଳ କୋଳି ମ ! ଟିକେ ଟିକେ କଷା, ଟିକେ ଟିକେ ଖଟା, ଭାରି ବଢ଼ିଆ । ଏନାଗେ ସାନବାବୁ କହିଥିଲେ ବୋଲି ଗୋଟେଇ ଗାଟେଇ ଏତକ କୋଳି ଆଣିଚି ।

ମଦରଙ୍କ ସ୍ତ୍ରୀ—ମନୁ ! ମନୁ !

ମନୁ—(ବଡ଼ ପାଟିରେ) ଜ, ଓ, ଏ, ଟି, ଗୋଟ୍ । ଗୋଟ୍‌ମାନେ ଛେଳି ।

ମଦର—ହରିଆ, ହରିଆ ! (ପୋଷାକ କାଢ଼ୁ କାଢ଼ୁ) କୁଆଡ଼େ ଗଲା ସେ ବଦମାସ୍ ।

ଚେ. ବାଲା—ମତେ ପଇସା ମିଳିଯାଉ ବାବୁ !

ମଦର—ହରିଆ, ହରିଆ !

ମନୁ—(ଅନ୍ୟମନସ୍କ ଓ ବିବ୍ରତ ଭାବେ) ଜ, ଓ, ଏ, ଟି ଗୋଟ୍—ଏ, ଏସ୍, ଏସ୍, ଆସ୍—ଜ, ଓ, ଏ, ଟି ଗୋଟ୍ ।

ମଦରଙ୍କ ସ୍ତ୍ରୀ—ହେ ମନୁ, ମନୁ ? ଇମିତି ପାଠ ପଢ଼ାରେ ମନ ଲାଗିଯାଇଚି !

[ ମନୁ ଭିତରକୁ ଚାଲିଗଲା । ତା' ପଛେ ପଛେ ମଦରବାବୁଙ୍କ ସ୍ତ୍ରୀ ଗଲେ । ଚେନାଚୁରବାଲା, କୋଳବାଲୀ ଆଦି ମଦରବାବୁ ଓ ତାଙ୍କ ସ୍ତ୍ରୀଙ୍କର ଏପରି ବ୍ୟବହାର ଦେଖି ଆଶ୍ଚର୍ଯ୍ୟରେ ଚୁପ୍‌ଚୁପ୍ କଥାବାର୍ତ୍ତା ହେଲେ । ହକର ଆଜି କଣ୍ଟୁ କାର୍ଟୁନ୍ ଛବି ଆଣି ପହଞ୍ଚିଲା । ]

ହକର—ଆଣିଲି ଆଜ୍ଞା !

ମଦର—କ'ଣ ?

ହକର—ଛବି ।

ମଦର—କ ଛବ ?

ହକର—ବଡ଼ ବଡ଼ିଆ ଛବ ଆଜ୍ଞା ! ଖବରକାଗଜରେ ବାହାରଥିଲ । ଆପଣ କହଥିଲେ ବୋଲ !

ମଦର—ମୁଁ କହଥିଲ ? ତୁମେ ସବୁ କ'ଣ ପ ଗଳ ହେଇ ଯାଇଚ ?

ମାରଓ୍ୱାଡ—ସମ୍ ସମ୍ !

[ ଜଣେ ମାରୁଆଡ ଗୁଡ଼ଏ ଖେଳ ଜନଷ ଗୋଟିଏ ବ୍ୟାଗ୍‌ରେ ଆଣି ପହଞ୍ଚିଲ । ]

ବାବୁ, ଆପନ କହଥିଲ ବୋଲ ଏ ସାମାନ୍ ସବୁ ଯୋଗାଡ଼ କରବାକୁ ସହରଯାକ ଘୂମି ବୁଲଲ । ବ୍ୟବସାୟୀ ଆଦମ୍, ଏ ସବୁ ଖେଳା-ଖେଳ ସାମାନ ଯୋଗାଡ କରବାକୁ ହାମେ ବଡ ହଇରଣ ହେଲ । ଲେ ଲେ ବାବୁ, ଏ ଆପକା ଫୁଟବଲ, ଏ ହକଷ୍ଟିକ୍, ଏ ପିଙ୍ଗ୍ ପଙ୍ଗ୍ ବଲ୍...

କୋଳବାଲ—ମେତେ ଢେର ହଉଚ ବାବୁ । ମୋ ଗାଁର ସେ ନଅାଁ ନାଗୀ ତରଲ ଗୁବ ପରେଇବେ । ମୁଁ ତ ତାଙ୍କ କୋଶ ଘିଚ ଆଇଚ ପର ।

ମଦର—(ମାରଓ୍ୱାଡ଼ ପ୍ରତି) ଏଗୁଡ଼ାକ କ'ଣ ?

ମାରଓ୍ୱାଡ—ଆପନ କହଥିଲେ ।

ମଦର—ମୁଁ କହଥିଲ !

ହକର—ଆପଣଙ୍କ ଛବ ନଅନ୍ତୁ ଆଜ୍ଞା ।

ମଦର—(ହକର୍ ପ୍ରତି) ଓଃ ବନ୍ଦକର । (ମାରଓ୍ୱାଡ ପ୍ରତି) ମୁଁ କହଥିଲ ?

ମାରଓ୍ୱାଡ—ଆପନ ଚାଶୋର ଦେଉଚନ ବାବୁ ' ହେମେ ଆପକୁ ପିଛେ ଫୋନ୍ କରଥିଲ, ଆପନ କହଲ, ଟେମର୍ଣ ଫିସ ଦର୍କାର ନାଇଁ ଲେକନ୍ ଖେଳ...।

ମଦର—ଖେଳ ଜନଷ ପାଇଁ ମୁଁ କହଥିଲ ! ମୁଁ ନା ମୋ ଭୂତ !

ମାରଓ୍ୱାଡ—ନେଇ ଆପ୍ ।

ମଦ୍ଦର—ବାଜେ କଥା ।

[ ମଦ୍ଦରବାବୁ ବିରକ୍ତି ପ୍ରକାଶ କଲାରୁ ମାରୱାଡ଼ି ବିଚରା କିଛି ବୁଝି ନ ପାରି ଚଉକିରେ ବସିପଡ଼ିଲା ।]

ମାରୱାଡ଼ି—କ୍ୟା ବାଜେ କଥା । ଆପନ କହିଲେ···

କୋଇଲିବାଲା—ମତେ ପଇସା ଦେଇଦିଅ ବାବୁ !

ଚେ: ବାଲା—ମୋ ପଇସା ଦେଇଦିଅ ବାବୁ । ବଡ଼ ବଢ଼ିଆ ଚେନାଚୁର ! ଚେନାଚୁର ଗରମ୍ । ବଡ଼େ ମଜେଦାର୍ ! ଅସଲି ଚଣା ଘୁଘୁନିଦାନା···

[ ଚେନାଚୁରବାଲା ଖୁବ୍ ଜୋର୍‌ରେ ଚିତ୍କାର କରୁଥିଲା, କିନ୍ତୁ ମଦ୍ଦର ବାବୁଙ୍କ ବିରକ୍ତି ଦେଖି ହଠାତ୍ ଅଟକିଗଲା । ଆସି ପହଞ୍ଚିଲା କୁଣ୍ଢେଇବାଲା । ]

କୁ: ବାଲା—ନିଅ ବାବୁ !

ମଦ୍ଦର—ସେ ପୁଣି କ'ଣ ?

କୁ: ବାଲା—କୁଣ୍ଢେଇ ।

ମଦ୍ଦର—(କୁଣ୍ଢେଇ ଦେଖି) ଏତେ କୁଣ୍ଢେଇ କ'ଣ ହବ ? ଏ ଘରେ ସେଗୁଡ଼ା ଏତେ ଭର୍ତ୍ତି ହେଇଛି ଯେ ! ଏଠି କ'ଣ ଖେଳନା ଗୋଦାମ ହବ ନା କ'ଣ ?

କୁ: ବାଲା—ଆଜ୍ଞା ଗ୍ଲେଟବାବୁ ମତେ କହିଲେ ।

ମଦ୍ଦର—ଗ୍ଲେଟବାବୁ ! ମନୁ, ମନୁ !

ବାବାଜୀ—(ପ୍ରବେଶ କରି) ବଂ ବଂ ହର ହର ଭୋଲା ! ବଂ ବଂ ହର ହର ଭୋଲା ! ଡାକ ଦିଅନ୍ତୁ ଆଜ୍ଞା, ଗ୍ଲେଟ ବାବୁଙ୍କୁ ଡାକ ଦିଅନ୍ତୁ ।

ମଦ୍ଦର—କାହିଁକି ?

ବାବାଜୀ—କାମ ଅଛି ।

ମଦ୍ଦର—କି କାମ ?

ବାବାଜୀ—(ଡରି ଡରି) ଗ୍ଲେଟବାବୁ ହାତ ଦେଖେଇଥିଲେ ।

ହକର—ମତେ ସେଇ ଗ୍ରେଟବାବୁ ବରାଦ କରିଥିଲେ ।

କୋଳବାଲା—ଗ୍ରେଟବାବୁ ଖୁବ ଭଲ ପିଲା । ମତେ ତ ସେଇ କହିଥିଲେ ।

ମାରଓ୍ୱାଡ଼—ତେବେ ମତେ କ'ଣ ଗ୍ରେଟବାବୁ ଫୋନ୍ କରିଥିଲା ? ଆବାଜ୍ ତ ଠିକ୍ କ'ଣ ଆପଣଙ୍କ ପରି ଲାଗିଲା !

[ମନ୍ଦରବାବୁଙ୍କ ସ୍ତ୍ରୀ ହରିଆକୁ ଘେନି ପହଞ୍ଚିଲେ ।]

ମନ୍ଦରଙ୍କ ସ୍ତ୍ରୀ—ସବୁ ପୁଅଙ୍କ ଗୁଣ । ହରିଆକୁ ଧମକେଇ···ମନୁଆଟେ ତ ! ଯାହା ଝୁଙ୍କ୍ ଧରିଥିବ···

ମାରଓ୍ୱାଡ଼—ଗ୍ରେଟବାବୁ ଏସବୁ ଗଡ଼ବଡ଼ର କରିଦେଲା ।

ହକର୍—ଆପଣ କଛୁ ଜାଣି ନାହାନ୍ତି ?

କୋଳବାଲା—ମୋ କୋଇଲା ହେଲେ ରଖ । ମୁଁ ଏତେ କୋଇ କ'ଣ କରିବ ? ସେ ନଆଁ ନାଗୀଗୁଏ ମେତେ ଇଲେ କେରେଇ କେରେଇ ଖାଇଯିବେ ।

ମାର୍ଓ୍ୱାଡ଼—ଏଁ ! ଏ କୋଲି କ୍ୟା ଗ୍ରେଟାବାବୁ ବରାଦ କରିଥିଲା ?

କୋଳବାଲା—ଆଜ କ'ଣ ମେତେ ଭୂତ ଲାଗିଥିଲା ! ଏ ତ ଆଚ୍ଛା ବାବୁ ।

ମାର୍ଓ୍ୱାଡ଼—ଆପନ କୁଆଡ଼େ ଯାଇଥିଲ କ ବାବୁ ଆଜ ସକାଳୁ ସକାଳୁ !

ମନ୍ଦର୍—ଆମେ ଟିକେ ସିନେମା ଯାଇଥିଲୁ । ଗୋଟେ ଇଂଲିଶ୍ ଛବି ଆସିଥିଲା ଯେ···

ମାରଓ୍ୱାଡ଼—ଗ୍ରେଟବାବୁକୁ ଏକଲା ଗ୍ରେଡ଼କେ ଆପ ସିନେମା ଚଲିଗଲେ । ତେବେ ଠିକ୍ ହୁଆ ।

ମନ୍ଦର—କ'ଣ ଠିକ୍ ହୁଆ ! ମନୁ-ମନୁ !

[ମନୁ ଡରି ଡରି ଆସି ପହଞ୍ଚିଲା ।]

କୋଳବାଲା—ତମ କୋଉ ପୁଅ ବାବୁ !

ଚେ: ବାଲା—ତମ ଚେନାଚୁର ପୁଅ ବଡ଼ବାବୁ !

ମନ୍ଦର—ବଡ଼ବାବୁ !

ବାବାଜୀ—ଷ୍ଟେଟବାବୁ କହିଲେ ବଗୁଡ଼ ଚନ୍ଦ୍ର ଆଜ୍ଞା !

ମଦର—ଓଃ !

କୁ: ବାଲା—ଆପ୍ ଏ ଖେଲୋନା ରଖୋ ! ବଢ଼ା ବଢ଼ିଆ ଖେଲୋନା !

ଚେ: ବାଲା—ଆଜ ମୋ ଚେନାଚୂର ବି ରଖ ।

କୋଳବାଲା—ଆଜ ମୋ କୋଳ ରଖିବନି କି ! କେରେ ବଢ଼ିଆ କୋଳ ! ନେଲ ! ମୁଁ ଯାଏ ।

ମାରଓ୍ୱାଡ଼—ଆରେ ବାବା ! ଲେଚା, ଲେଚା । ରହୋ, ହାମ୍ ସବ୍ ଲେଗା ।

[ମାରଓ୍ୱାଡ଼ ଟଙ୍କା କାଢ଼ିଲା ।]

ମଦର—ଏଗୁଡ଼ାକ ସବୁ ତୁମର କ'ଣ ହବ ଶେଠ୍‌ଜୀ !

ମାରଓ୍ୱାଡ଼—ଷ୍ଟେଟବାବୁ ଯେତେବେଳେ ବର୍ଯାଦ କରଚ...

[ସମସ୍ତେ ହସିଉଠିଲେ ।]

ହରିଆ—ଷ୍ଟେଟବାବୁ ନୁହେଁ ବଡ଼ବାବୁ ! ସେଇ ଯୋଗେ ମୋ ସାଙ୍ଗେ ଆଜ ଝଟାପଟା କଲ !

ମାରଓ୍ୱାଡ଼—ହାଁ ବଡ଼ାବାବୁ, ବଡ଼ାବାବୁ ! ମନୁବାବୁ ଆମର ବଡ଼ାବାବୁ !

[ମନୁକୁ ସ୍ନେହରେ କୁଣ୍ଢାଇ ପକାଇଲେ ।]

ବାବାଜୀ—ମନୁବାବୁ ଖୁବ୍ ଭଲ ପିଲା । ତାଙ୍କ ହାତରେ ଯଶ ସବୁ ଲେଖାଅଛି ।

ମଦର—ହେଲେ···କ'ଣ ମନୁ ! ଏସବୁ ଏଠି କ କାମ ଚାଲିଥିଲା ?

ଚେ: ବାଲା—(ମଦରବାବୁଙ୍କ ପ୍ରତି) ତାଙ୍କର ଦୋଷ କ'ଣ ! ଆପଣ ତ ତାଙ୍କୁ ଘରେ ଏକା ଛାଡ଼ିଦେଇ ଗଲେ !

କୋଳବାଲା—ପିଲାଲୋକ, ଯାହା ମନ ହେଲା···

କୁ: ବାଲା—କୁଛ୍ ଖରାପ୍ ତ କରନାହାନ୍ତି । ଆଚ୍ଛା ଆଚ୍ଛା ଖେଲ୍‌ନା ବରବାଦ୍ କରଚନ୍ତି ।

ମଦର—କ'ଣ ମନୁ ! କାନ ଧର ଏଠିକି ଆ । ସମସ୍ତଙ୍କ ପାଖେ ଭୁଲ୍ ମାନେ ।

ମାରୱାଡ଼—ଏଁ:, ଏ ଆପନ କ'ଣ କହୁଚନ୍ତି ! ପିଲାଲୋକ !

ମଦରଙ୍କ ସ୍ତ୍ରୀ—ତା'ର ଦୋଷ କାହିଁ ହେବ ! ମୁଁ କହୁଚି ତାକୁ ସାଙ୍ଗରେ ନେଇଯିବା ବୋଲି···

ମଦର—ତା' ବୋଲି ଘରେ ଯାହା ଇଚ୍ଛା ତା' କରିବ !

ମାରୱାଡ଼—ଆରେ ତୁମର ସବୁ କେତନା ପଇସା ହୁଆ !

ଚେ: ବାଲା—ମୋର ଦୁ' ଟଙ୍କା ।

କୁ: ବାଲା—ମୋର ସାଢ଼େ ତିନଟଙ୍କା ।

କୋଳବାଲା—ମେତେ ତେମେ ଏ ଦୁ'ଟା ଟଙ୍କା ଦଅ । ଗୋଟା ଟଙ୍କା ହବନି । ରେଜା ଦଅ । ମୁଁ ସେ ନଆଁନାଗୀଗୁଡ଼ାଙ୍କୁ ବାଣ୍ଟିକରି ଦେବି ।

ବାବାଜୀ—ଆଜି ମୋ ହାତଦେଖା ବାବଦକୁ······

[ସେଠଜୀ ପଇସା ଦେବାକୁ ପ୍ରସ୍ତୁତ ହେଲେ ।]

ମଦର—ନାଇଁ ସେଠଜୀ, ତମେ ସେ ପଇସା ଦିଅନା ! ସେଇ ପଇସା ଆଣି ଦବ । କ'ଣ ମନୁ ! ତାଙ୍କ ପଇସା ଆଣିଦିଅ ।

ବାବାଜୀ—ଆପଣ କାହିଁ ଇମିତି ରାଗୁଚନ୍ତି ! ପିଲା ଲୋକ, ଗୋଟେ କ'ଣ ଖିଆଲରେ କରିଦେଲେ ।

ମାରୱାଡ଼—ଦୋଷ ତ ଆପଙ୍କେର ବାବୁ ! ଆପନ ସିନେମା ଦେଖି ଭୁଲିଗଲ । ପିଲାଟାକୁ ଏକୁଟିଆ ଛାଡ଼ିଦେଇ······

[ସେଠଜୀ ସମସ୍ତଙ୍କୁ ଟଙ୍କା ଦେଲେ ।]



ମନ୍ଦର—ଦୋଷ ମୋର !

ବାବାଜୀ—ନଷ୍ଟସ୍ୟ ! ଆଜ ଦୋଷ କ'ଣ ଆମ ବଡ଼ ବାବୁଙ୍କର !

[ସମସ୍ତେ ହସିଉଠିଲେ । ମାରଓ୍ୱାଡ଼ି ଖେଳନା ଜିନିଷ ନେଇ ମନୁକୁ ଦେଲା । ଅନ୍ୟମାନେ ସେମାନଙ୍କ ଜିନିଷ ସବୁ ନେଇ ମନୁ ପାଖରେ ରଖିଲେ । ହରିଆ ଚୋକେଇ, ଡାଲା ଦ'ଖଣ୍ଡ ଆଣିଲା । ସେଥିରେ କୋଳି, କୁଣ୍ଡେଇ ଆଦି ରଖିଲା ।]

(ମନୁପ୍ରତି) ହାତ ଦେଖେଇବନି ? [ମନୁ ନୀରବ ରହିଲା ।]

କୋଳିବାଲୀ—ଯାଉଚି ବାବୁ । ଫେରେ ଆସିବି !

କୁ: ବାଲା—ଯାତା ବାବୁ । ଫିର୍ କବ୍ ଆଏଗା !

ମନ୍ଦର—ନାଇଁ, ଆଉ ଆସିବା ଦରକାର ନାହିଁ ! ଯେତିକି ଉପକାର କଲ, ସେତିକି ଯଥେଷ୍ଟ ।

କୋଳିବାଲୀ—ଏ, ମୁଁ କ'ଣ ତମକୁ କହୁଛି କି ? ମୁଁ ମୋ ବରବାବୁଙ୍କୁ କଉଚି ନା !

ଚେ: ବାଲା—ଯାଉଚି ବାବୁ, ପୁଣି ଯେବେ ଚେନାଚୁର୍ ଦରକାର ହବ, ମତେ ଡାକିବ । ଏମିତି ଚେନାଚୁର୍ ଆଉ କେଉଁଠି ପାଇବନି । ଚେନାଚୁର୍ ଗରମ୍ । ଚେନାଚୁର୍ ଗରମ, ବଡ଼େ ମଜେଦାର······

[ଗୀତ ବୋଲି ବୋଲି ଚାଲିଗଲା, ମନୁ ଗମ୍ଭୀର ଓ ନୀରବ । ଅନ୍ୟ ସମସ୍ତେ ହସୁଥାନ୍ତି ।]

***